## ଯତ୍‌କିଂଚିତ

'ଉତ୍କଳିକା' ପରେ 'ସ୍ମରଣିକା'ରେ ମୁଁ କେତୋଟି ଐତିହାସିକ କଥାକୁ କବିତାରେ ରୂପ ଦେଇଛି । କବିତାଗୁଡ଼ିକ ଭିନ୍ନ ଭିନ୍ନ ସମୟର ଲେଖା । ସମୟର ଯୋଗସୂତ୍ର ତ ଚଳେ ନାହିଁ । କବିତା-ଗୁଡ଼ିକ ଏକ ଜାତିର ବା ଏକ ଶ୍ରେଣୀର ବୋଲି ଏକତ୍ର ଗୁନ୍ଥି ଦେଇଛି ମାତ୍ର ।

ଅନୁଗୁଳ  
୧୫ । ୬ । ୧୯୫୦

ରାଧାମୋହନ ଗଡ଼ନାୟକ

# ସୂଚୀ

# ସ୍ମରଣିକା

## ଋଷିଖୁଣ୍ଟିଆ

୧

"କାଲି ଚେବେ ମୁହିଁ ଝାନ୍‌ସି ଯାଉଛି"
ପଞ୍ଜୁଷ ରତ୍ନର କଷ କୋଲେ
ରୁକ୍ମଣୀର ଆଗେ ଋଷି ଖୁଣ୍ଟିଆ
ଶେଷଥର ପୁଣି ଚିତ୍ର ଖୋଲେ ।

"ବିପଦରେ ପଡ଼ି ଚିଠାଉ ଲେଖିଚ
ଝାନ୍‌ସିର ରଣୀ ଲକ୍ଷ୍ମୀବାଈ
କେତେ ଉପହାର କେତେ ସମ୍ବାଦ
ପଠାଇ ଦେଇଚ ଆମର ପାଇଁ ।

କାଳିଆ ଠାକୁର    କୃପା-କଣା ଘେନ
ଛୁଡ଼ା ହୋଇଗଲେ ଦୁଆରେ ତାର
କଂଟକ ହେଲେ    ଲଘୁ ହୋଇଯିବ
ଦୁଃଖ ମନର ବେଦନା-ଭାର ।

ତୁମେ ତ ଜାଣିଚ    ପିତା ମାତା ତୁଲେ
'ମନୁ' ଆସି ଆମ ଏ ନୀଳାଚଳେ,
ପ୍ରିୟ ମଣିଥିଲୁ    ଆମ ପରିବାର
ଅତୁଳ ସେନେହ-ମମତା-ବଳେ ।

ପିତା ତୁଟିଲ ଯାଇ    ମନୁର ନଅରେ
କୈଶୋର ମୋର କଟାଇଥିଲି,
ସ୍ମରଣର ପଥେ    ଜାଗିଉଠେ ଆଜ
ଭୁଂଜୁଥିଲି କ ଅତୁଳ ଶିକ୍ଷା ।

ସେଇ ସମୟର    ପରିଚିତା ମନୁ
ଆଜ ହୋଇଅଛି ଲକ୍ଷ୍ମୀବାଈ,
ଶିରେ ବହିଅଛି    ଝାନ୍‌ସିର ଶିକ୍ଷା
ଝାନ୍‌ସିର ରାଜମୁକୁଟ ପାଇ ।

ବିପଦରେ ଆଜ    ପଡ଼ିଅଛି ଯେତ
ହୃଦରେ କି ତାର ବେଦନା ଭରା
ଏତେ ଦୂର ଦେଶୁ    ଲୋଡ଼ିଅଛି ମୋତେ
କହିଲ କପରି ନଯିବ ଭଲା ?"

'ସୁଦଶ୍ମମଣି' ଶୁଣିଲେ ସକଳ
କଣ୍ଠ ଥରିଲା ବେଦନାତୁର
"ଦୁରୁବନ୍ଧ ଧନ କପଟ ଭଙ୍ଗିବ
ତୁମେ ତ ଯାଉଛ ଗାଇଜ ଦୂର ।"

ଗୃହିଣୀର ମଥା ଆଉଁସି ଆଉଁସି
ପଣ୍ଡା କହିଲେ ସରାଗ ବାଣୀ,
"ଏପରି ହେଲେ କ ଋଷି ଝୁଣ୍ଟିଆ
ଦୁନିଆରୁ କଚ୍ଛୁ ପାରିବ ଆଣି ?

ବଡ଼ ଦେଉଳର କାଳିଆ ଠାକୁର
ଜଗତର ନାଥ ଆମରି ସାହା,
ଘନ ଅନ୍ଧାରେ ବିଦ୍ୟୁତ୍ ପରି
ଗହନେ ଲେଖିବେ ଆଶାର ରାହା ।"

କାଳିଆ ଠାକୁର ନାମ ଶୁଣି ନାଙ୍ଗ
ଭୁଲି ହୋଇଗଲେ ନକଣ୍ଠ କଥା,
ଆଜି ଥରେ ପୁଣି · ଋଷି ଝୁଣ୍ଟିଆ
କରେ ପୋଛିଦେଲେ ପ୍ରିୟାର ବ୍ୟଥା ।

ଚନ୍ଦ୍ରଁ ଆର ଧନ ଘରୁ ବାହା ହୋଇ
ବଡ଼ ଦେଉଳର ପ୍ରସାଦ ଧରି,
ଲଛମନ ରାଓ- ଦଳବଳ ସାଥେ
ଋଷି ଖୁଣ୍ଟିଆ ଛାଡ଼ିଲେ ପୁରୀ ।

୨

ରାଜପ୍ରାସାଦର ମନ୍ତ୍ରଣାଗାରେ
ଝାନ୍‌ସି-ରାଣୀର ବାଜିଲା ବାଣୀ,
"କି କରିବା ଏବେ ବୃଦ୍ଧ ପଣ୍ଡାଙ୍କ
ଦେଶର ଦଶା ତ ପାରୁନ ଜାଣି ।"

"ଝାନ୍‌ସି ରାଣୀର କଣ୍ଠ ଅଶ୍ରୁଳ
ଛଳ ଛଳ ଆଖି, ବିକଳ ସ୍ୱର,
ଦେବ ଶିଶୁଟିଏ ପାଇଥିଲା କୋଳେ
ଢଳିଗଲା ଦେଇ ଆଖିର ଜଳ ।

ପଛେ ପଛେ ତାର ରାଜା ଗଲେ ଚାଲି
ପ୍ରାଣପୁର ମୋର ଶୂନ୍ୟ କରି,"
କହୁ କହୁ ହାୟ ଆହତ ମନରୁ
ଲୋତକର ଧାର ପଡ଼ିଲା ଝରି ।

"ମଣିଷ ଜନମ ପାଇ ଏ ମରତେ
କିଏ ଏଡ଼ି ଦେବ ନିୟତି-ଧାର,
ଆସିବା ଯିବା ତ ଲାଗିଥିବ ଭବେ
ମଣିଷ ସହିବ ଶୋକର ଜ୍ୱାଳା ।

ସେଥିପାଇଁ ରାଣୀ        ତୁମ ପକ୍ଷରେ
ଲୁହ ଢାଳିବାର ବେଳ ଏ ନୁହେ,
ହୁତ୍ ହୁତ୍ ହୋଇ        ବହ୍ନିର ଶିଖା
ଜଳି ଉଠୁଅଛି ଦେଶର ଗୃହେ ।

ଆପଣାର ପାଇଁ        ନୁହେଁ ତୁମେ ଆଜ
ଝାନ୍ସି ଦେଶର ତୁମେ ଗୋ ରାଣୀ,
ଧୈର୍ଯ୍ୟ ଧର ଗୋ        ଦମ୍ଭ ଧର ଗୋ
ଧର୍ମ କି ତବ ପାରୁନ ଜାଣି ?

ଧୈର୍ଯ୍ୟ ଅଛି ମୋ        ଦମ୍ଭ ଅଛି ବ
ଧର୍ମ ବୁଝୁଛି ଏ ମୋର ପ୍ରାଣେ,
ଆତ୍ମାର ଅଂଶ        ଆତ୍ମୀୟ ଲାଗି
ମମତାର ଧାର ବାଧା କି ମାନେ ?

ରାଜା ଚାଲିଗଲେ        କେ ହେବ ଦାୟାଦ ?
ବଣିକ ଦେଖିଲା ସୁନାର ବେଳା,
ସର୍ବଗ୍ରାସୀ ତା'        ଶାସନ ଭିତରେ
ଝାନ୍ସିକି ତେଣୁ ମିଶାଇ ନେଲା ।

ଯେତେ ଜଣାଇଲା        ମୁଁ ଅଛି ଦାୟାଦ
ଦେଶର ଶାସନ ଗୃହୀତ ମୁହିଁ
ସବୁ ଅଭିଯୋଗ        ଅନୁଯୋଗ ମୋର
ନ ପାଶିଲା ତାର ବକ୍ଷର ଛୁଇଁ ।

ପୁରୁଷ କେବଳ   ରାଜ୍ୟ ଚଳାଇ
ନାରୀ କି କେବଳ ଅବଳା ଅଛି ?
ଦେଶ ସଂଗ୍ରାମ   ଚଳାଇ ନାହିଁ କି
ଏଇ ଭାରତର ଦୁର୍ଗାବତୀ ?
ରାଜା ଚାଲିଗଲେ   ପର ଅଧୀନେ କି

କଟିବ ଆମର ଜୀବନ ଛବ ?
କେତେ ବା ସହିବା   ପଣ୍ଡାଣୀ କୁଢ
କୁଟିଳ ବେପାର କମ୍ପାନୀର ?"

"ସହିବାର ନୁହେଁ   ଝାନ୍ସି ରାଣୀ ଗୋ,
ସହିବାର ନୁହେଁ···ସହିବା ନାହିଁ,
ଜାଗୃତ ଆଜ   କାମ୍ୟ ଆମର
ବନ୍ଦୀ ଦେଶର ମୁକ୍ତି ପାଇଁ ।

ସୁପ୍ତ ଭାରତ   ନ ଜାଗିବ ଯେବେ
ନ କରିବ ଯେବେ ନିଗଡ଼ ଦୂର,
ବିଦେଶୀ ଶାସନ   ଧର୍ମ କର୍ମ
ଜ୍ଞାନ ଗୌରବ କରିବ ଚୂର ।

ଆଜ ସେଥିଲାଗି   ପ୍ରସ୍ତୁତ ହୁଅ
ଭାରତ ଯୁବକ, ଭାରତ ନାରୀ,
ଭାରତର ଯେତେ   ରାଜା ଜମିଦାର
ହୁଅ ଜାଗ୍ରତ ଅସ୍ତ୍ରଧାରୀ ।

ଶସ୍ୟ ସବୁଜ    କ୍ଷେତ ମାଟ୍ଟି ଗୁଡ଼ୁ
କୃଷାଣ ଅଟରେ କୃପାଣ ଧରୁ,
ହଜାର ହଜାର    ସଂଖ୍ୟାରେ ଆଜ
ଦେଶର ସକାଶେ ମରଣ ବରୁ ।

ଗୋଟାଏ ଘଣ୍ଟରେ    ଏ ଦେଶରୁ ହେବେ
ବିଦେଶୀ ଶାସନ କରିବା ଶେଷ,
ସୁନାର ପ୍ରଭାତେ    ମୁକ୍ତ ସ୍ୱାଧୀନ
ଦେଖିବା ଆମର ଭାରତ ଦେଶ ।”

“ଦେବଦୂତ ସତେ '    ଆସିଅଛ ତୁମେ
ବଡ଼ ଦେଉଳର ପୁଣ୍ୟ ପୁରୁ
ତୁମ ନିର୍ଦ୍ଦେଶ    ଧର୍ମ ମୋହର
ତୁମେ ଆଜ ମୋର ଦୀକ୍ଷା-ଗୁରୁ ।”

୩

“ବିଦେଶୀ ଶାସନ    ଚୂର୍ଣ୍ଣିବା ଆମେ
ବଣିକ ବେପାର କରିବା ଶେଷ,
କେତେ ଦିନ ଆଉ    ଧରିଥିବା ଆମେ
ପରାଧୀନତାର ଘୃଣ୍ୟ ବେଶ ।

ବିଦ୍ରୋହୀ ଆଜ ହିନ୍ଦୁ ଆମେ ରେ,
ବିଦ୍ରୋହୀ ଆମେ ମୁସଲମାନ,
ମୁକ୍ତ କରିବା ଭାରତ ଆମର
ସ୍ୱାଧୀନ କରିବା ହିନ୍ଦୁସ୍ଥାନ ।"

ବଂ ବଂ ହର ଆଲ୍ଲା ଦିନ୍ ଦିନ୍
କଳ କଲ୍ଲୋଳ ଉଠିଲା ମାତି,
ଭଗେୟା ଝେଣ୍ଡା ପତାକା ସାଥିରେ
ଚନ୍ଦ୍ର-କେତନ ଉଡ଼ିଲା ଛୁଟି ।

ଭେଦାଭେଦ ଭୁଲି ଭାଇ ଭାଇ ଡାକି
ଜାଗିଲା ହିନ୍ଦୁ ମୁସଲମାନ,
କୋଟିଏ କୋଟିଏ ସଂଖ୍ୟା ଅତରେ
ହେଲା ପୁଞ୍ଜିତ ଗୋଟିଏ ପ୍ରାଣ ।

ଦୁଇ ତିନି ମାସେ ଉତ୍ତର-ପଥେ
ବିଦ୍ରୋହ ନିଆଁ ଉଠିଲା ଜଳି,
ହଜାର ହଜାର କ୍ଷୁବ୍‌ଧ ଛୁଟିର
ଧୂମ୍ର ପଟଳ ସୃଷ୍ଟି କରି

ଦାବାନଳ ସମ ଛହ୍ନୁଡ଼ି ପଡ଼ିଲା
ଜଳିଲା ମିରଟ ବାରାକ୍‌ପୁର,
ଜଳିଲା ବେରିଲି ଲକ୍ଷ୍ନୌ କାଶୀ
କାନପୁର ସାଥେ ଗୁଆଲିଅର ।

ଆହ୍ବତ ଡାକିଲା ବାହାଦୁର ସାହ-
ନାନାସାହେବର ଅରୁଣ ବାଣୀ
ଆହ୍ବତ ଡାକିଲେ ତାନ୍ତିଆ ଟୋପି
ଲକ୍ଷ୍ମୀ ଝୁଣ୍ଟିଆ, ଝାନ୍ସି ରାଣୀ ।

ଆହ୍ବତ ଡାକିଲେ କୁଆଁର ସିଂ
ଦଗ୍ଧ ଭାରତ ଜଠିଲା ମାତି,
ହଜାର ହଜାର ଗୋରାର ରକତ
ପିଇଲା ତୃଷିତ ଭାରତ ଛାତି ।

ଶଂକିତ ମନେ ଦିଲ୍ଲୀ ଭବନେ
ଲର୍ଡ଼ କ୍ୟାନିଂ ଛାଡ଼ିଲେ ରଡ଼,
'ବିଦ୍ରୋହୀ ଆଜି ଭାରତ ମାଟିରେ
ଇଂରେଜ ଜାତି ପିବ କି ସର ?''

ଆନ୍‌ସାନ୍ ସାଥେ ବାର୍ଣ୍ଣାର୍ଡ଼ ଶଉ୍
ଆଉ୍ ଯେତେ ଥିଲେ ସେନାନୀଗଣ,
ଫଉଜ ଚଳାଇ ଜଣାଇଲେ, ''ଆମେ
ରଣ ଲାଗି କଲୁଁ ଜୀବନ ପଣ ।''

ଭାରତର କେତେ ଦେଶଦ୍ରୋହୀଙ୍କର
ରଖି ଇଂରେଜ ଆପଣା ଦଳେ,
କେତେ କେତେ ପୁଣି କାଶ୍ମା ସହର
ହର ଅଧିକାର, ଦଖଲ କଲେ ।

ସମର ଭୂଇଁରେ ମରଣ ବରିଲେ
ବହୁତ ହିନ୍ଦୁ ମୁସଲମାନ,
ଜନମ ଭୂଇଁର ସନ୍‌ମାନ ଲାଗି
ତଥାପି ଲଢ଼ିଲେ ତେଜିଲେ ପ୍ରାଣ ।

୪

ଛାନ୍ତିଆ ଟୋପି ଲୁଙ୍ଗି ଖୁଣ୍ଟିଆ
ଝାନ୍‌ସିର ରାଣୀ, ସିପାହୀଦଳ,
ଦେଶର ଉଡ଼ାଇ ମୁକ୍ତି-ନିଶାଣ
ମାଡ଼ି ବସିଗଲେ ଗୁଆଲିଅର ।

କପ୍ତାନ୍ ବେଜ୍ ଗଭୀର ନିଶୀଥେ
ଚଢ଼ାଉ କରିଲେ ଫଉଜ ଧରି,
ଗୁଡ଼ୁମ୍ ଗୁଡ଼ୁମ୍ ଗୁଳିର ଆବାଜ୍
ଘଡ଼ଘଡ଼ ପରି ଉଠିଲା ରଡ଼ି ।

ଛାନ୍ତିଆ ଟୋପି ନିର୍ଦ୍ଦେଶେ ତହିଁ
ମୁକ୍ତି-ପାଗଳ ସିପାହୀଦଳ,
ବଜ୍ର ଆରବେ କମାଣ ଫୁଟାଇ
ଫଟାଇଲେ ଗୋରା-ଫଉଜ-ବଳ ।

ଘୋଟକ ବାହନେ      ପୁରୁଷର ବେଶେ
ଅସି ଚଳାଇଲେ ଲକ୍ଷ୍ମୀବାଈ,
ରୁଷି ଖୁଣ୍ଟିଆ      ବଇଶ ହାଣିଲେ
ଝାନ୍‌ସି ରାଣୀର ପାଶରେ ଥାଇ ।

ଘାତ ପ୍ରତିଘାତେ      ଦୁଇଦଳେ ତହିଁ
ତୁମୁଳ ହୋଇଲା ସମର ଘଣ୍ଟା,
କଏ ହଟିଗଲା,      କେ ମାଡ଼ ଖାଇଲା,
ସାଟରେ ଯେସନ ଜୁଆର ଭଟ୍ଟା ।

ଝାନ୍‌ସି ରାଣୀର      ପୃଷ୍ଠେ ସହସା
ବହିଲେ ଅମି ଦାରୁଣ ଗୁଳି,
ଆଖିର ପଲକେ      ବୀର-ଅଙ୍ଗନା
ଅଶ୍ୱ-ବାହନୁ ଢଳିଲେ ଟଳି ।

ରୁଷି ଖୁଣ୍ଟିଆ      ଚରଣରେ ଯାଇ
କୋଳେ ଟେକାନେଲେ ଆହତ ଦେହ,
ମୂର୍ଚ୍ଛିତ ରାଣୀ      ଆଉଁସି କାତରେ
ଢାଳିଲେ ଲୋତକ ସଜଳ ସ୍ନେହ ।

ଲକ୍ଷ୍ମୀବାଈର      କଣ୍ଠୁ ଝରିଲା
ସଦାସ୍ତର ବାଣୀ, "ଗୁରୁଜୀ ଶେଷ,
ମରଣର ଆଗୁ      ଦେଖି ନ ପାରିଲି
ମୁକ୍ତ ସ୍ୱାଧୀନ ଭାରତ ଦେଶ ।"

"ଗୋଟିଏ ତୁମେ ଗୋ ଭାରତ ଭୂଇଁରେ
କୋଟି ଶକ୍ତିରେ ଜନମ ନେବ
ଭାରତ ଏକାଗେ ମୁକ୍ତ ହେଉନ
ସେତେବେଳେ ଯାଇ ମୁକ୍ତ ହେବ ।"
କହୁଥାଉ ଆଉ ରହୁଥିଲା ଯାହା
ଛଳ ଛଳ ହେଲା ସଜଳ ଡୋଳେ
ଚରଦନ ପାଇଁ ମୁକ୍ତ ସମ୍ବାଦ
ନୟନ ମୁଦିଲେ ଗୁରୁଜୀ କୋଳେ ।
ତା କୁଆ ଟୋପି ସମ୍ବାଦ ପାଇ
ଜଙ୍ଗଲ ଗଡରେ ଆସିଲେ ଛୁଟି,
ଦେଖିଲେ ରାଣୀର ଦୃପ୍ତ ମୁହଁରୁ
ଜୀବନ ନାଟିକା ଯାଇଛୁ ତୁଟି ।
ପଛକୁ ହଟିଲେ ପଛକୁ ହଟିଲେ
ଭଗ୍ନମନା ସେ ସିପାହୀଦଳ,
କପ୍ତାନ ରେଜ୍ ଫିରଂ ଫୌଜ
ଦଖଲ କରିଲେ ଗୁଆଲିଅର ।

୫

ବାହାଦୁର ସାହ ପଡ଼ିଲେ ହାଇ ରେ
ବ୍ରହ୍ମଦେଶର ବନ୍ଦୀଶାଳେ,
ନାନାସାହେବର ସ୍ୱପ୍ନ ହଜିଲା
ନେପାଳ-ତରାଇ କାନନମାଳେ ।

ଛାନ୍ତିଆ ଟୋପି    ଗୋପନେ ଗୋପନେ
ଦକ୍ଷିଣେ ହେଲେ ଅଗ୍ରସର,
ଶକୁନ ପରିଏ    ସଜାଗ ରହିଲେ
ପଛେ ପଛେ ତାର ଗୁପ୍ତଚର ।

ଡେଲହାଉସୀର    ଭାରତ ସପନ
ଏତେଦିନେ ଜାଣି ସଫଳ ହେଲା,
ବୁଦ୍ଧି ଖୁଣ୍ଟିଆ    ଲକ୍ଷ୍ୟ କରିଲେ
ମଝି ଦରିଆରେ ବୁଡ଼ିଗ ଭେଳା

କେଉଁଠାରେ ଯାଇ    ଆଶ୍ରୟ ନେବେ
ବହୁତ ଭାଳଲେ ମର୍ମଗତେ,
ଝଟିକା ପରିଏ    ଛୁଟିଲେ ସୁଦୂରେ
ସ୍ୱାଧୀନ ରାଇଜ ନେପାଳ ପଥେ ।

ପଥେ ଯାଉଁ ଦେଖି    ସର୍ବାଙ୍ଗ ଚର
ପଳାତକ ବୀର ଭାଗ୍ୟହୀନ,
ଗହ୍ୱାର ଏକ    ଝଙ୍କ ଭିତରେ
କାତରେ କାଟିଲେ ସତର ଦିନ

ତାହାପରେ ଯାଇ    ପରବସ୍ତୁ ଦେଲେ
କାଲ କାଙ୍କର ନୃପତି ପାଦେ,
ବୀର ଜୀବନରେ    ବୁଦ୍ଧି ଖୁଣ୍ଟିଆ
ମରଣ ପାଳିଲେ ଗୁପ୍ତବାସେ ।

୬

ବହୁଦିନ ପରେ            ବହୁଦିନ ପରେ
କାର୍ତ୍ତିକ ମାସ ସଞ୍ଜବେଳେ,
ଉଚ୍ଛଳା ପରାଣେ            ରୁକ୍ମି ଖୁଣ୍ଟିଆ
ଅଗଣାରେ ଆସି ଚରଣ ଦେଲେ

ଆତୁର ନୟନେ   ଯାହା ସେ ଦେଖିଲେ
ବିଶ୍ୱାସ କରି ପାରିଲେ ନାହିଁ,
ରୁକ୍ମିଣୀର ଆଜ        ଏ କି ବେଶବାସ
କାଚ ସିନ୍ଦୂର ଚଲି ସେ କାହିଁ !

ଅଦ୍ଭୁତ କେତେ            କଳ୍ପନା ଆସି
ମଥାଟା ଭିତରେ ଉଠିଲା ଭରି,
ଲୁହେ ଫାଟିଗଲା            ବିସ୍ମିତ ଆଖି
ଜିଜ୍ଞାସୁ ମନ ଉଠିଲା ଥରି ।

"ସମଲପୁରର        ଦୁବେ ବୋଲି କିଏ
ଥିଲା ଯାଇ ପରୀ ସିପାହୀ ଦଳେ,
ମିଶ୍ର ଘଇନା              ପାଖକୁ ଚିଠାଉ
ଲେଖିଥିଲା ବନ୍ଧୁ ଦିବସ ତଳେ ।"

ଅଶ୍ରୁ ଆବେଗରେ             କଣ୍ଠ ଥମିଲା,
ମଣି ଆଉ କହି ପାରିଲେ ନାହିଁ,
ଛପଛ ବୁକୁରେ        ଆଉଜାଇ ନେଲେ
ହତଭାଗିନୀର ଭବଗ୍ରାହ୍ମୀ ।

ଗଦ ଗଦ ଭାଷେ    ଝିଅ ମେଲା ଦେଲେ
"କାଳିଆ ଠାକୁର ଆମର ସାହା
କାଳିଆ ଠାକୁର    ଦୂର କରିଦେଲେ
ଦୁଃଖ ଦୁର୍ଗତି ଥିଲା ଗୋ ଯାହା ।

ଜଗତ ଠାକୁର    କରୁଣା କରିଲେ
କଟିଲା ଆମର କଷଣ ଡୋର,
ଭ୍ରମରି ଗୁଞ୍ଜରେ    ମରି ଯାଏ ମୁହିଁ
କଜଳ ସିନ୍ଦୂର ପାଇଲି ମୋର ।"

୭

ସକାଳ ନୋହୁଣୁ    ରଷ୍ଟ୍ର ହୋଇଲା
ଟିକଏ ମାତର ହେଲାନି ଡେରି,
"ଯୁଦ୍ଧ ଭୂଇଁରେ    ମରି ନଥିଲା ମ
ବୃଥି ଖୁଣ୍ଟିଆ ଆସିବ ଫେରି ।"

ଖୁଣ୍ଟିଆ ଘର    ବାହାର ଭିତର
ଜନ ଗହଳିରେ ଉଠିଲା ସୁର ।
ବୃଥିଆରେ ଭିଡ଼    ମିଶ୍ର ଭାଇନା
ଗଲା ହୃଦୟର ବେଦନା ଭୁଲି ।

ସମ୍ବାଦ ପାଇ ସରକାରୀ ଦୂତ
ପରବାନା ଆଣି ଦେଖାଇ ଦେଲା,
"ଗୁଣି ଖୁଣ୍ଟିଆ ହାକିମ ପାଖକୁ
ଆସ ଏଇକ୍ଷଣେ ନକର ହେଳା ।"

"ହାକିମଙ୍କୁ ତୋର କହିବୁ ଯାଇରେ
ଗୁଣି ଖୁଣ୍ଟିଆ ଡରେ କି ସ୍ୱାକୁ,
କେତେ ଯେ ସାଇବ ଶେଷ କରିଅଛି
ହିସାବ ନେବୁ କି ଆଜ ମୋ ପାଖୁ ?"

ଦୂତ ଗୁଳଗଲ କହିଦେଲେ ସିନା
ମନରେ ସେକ୍ଷଣେ ଚେତନା ହେଲା,
"କୁକୁର ରକତ ଚାଖୁଛି କାହିଁକି
ଜୀବନେ ଅଛି କି ଆଜ ଯେ ବେଳା ?"

ଘଣ୍ଟାକ ପରେ ଗୁଣିର ଦୁଆରେ
ସିପାହୀ ଫଉଜ ମିଳିଲେ ଆସି
ହାକିମ ପାଖକୁ ଗଲେ ଖୁଣ୍ଟିଆ
ମଣିର ନୟନେ ଅଶ୍ରୁରାଶି ।

ସାହେବ ପୁଛିଲେ "ଖୁଣ୍ଟିଆ ତୁମେ
ସିପାହୀ ଦଳର ଥିଲ କି ନେତା ?"
"ହଁ ମୁଁ ଥିଲି" ନିର୍ଭୟ ସ୍ୱରେ
ଜବାବ ଦେଲେ ସେ ସତେ କି ଜେତା ।

"ଆଜଠାରୁ ତୁମେ ଅଟକ ବନ୍ଦୀ
ଜୀବନ କାଟ ଏ ପୁଷ୍ପରେ ଥାଇ ।
ସରକାର ଦେବେ ମାସିକ ଖରଚ
ପୁଣି ତୁମେ ଛାଡ଼ ପାରିବ ନାହିଁ ।"

ହସ ହସ ହୋଇ ଗୃଖି ଝିଣ୍ଟିଆ
ଚଞ୍ଚଳ ପଦେ ଫେରିଲେ ବାସେ,
"ହାକମ କାହିଁକି ଧରି ନେଇଥିଲା ?"
ପ୍ରିୟା ପଚାରିଲା ଆକୁଳ ଭାଷେ ।

"ଡର ନାହିଁ ତୁମେ" ଗୃଖିଆ କହଇ
"ଡର ନାହିଁ ଆଜ କୋଉଥି ପାଇଁ,
ତୁମର ପାଶେ ମୁଁ ଅଟକ ବନ୍ଦୀ
ପୁଣି ଆଜ କେବେ ଛାଡ଼ିବ ନାହିଁ ।"



## ୟାରବାଡ଼ା-କାରାବାସେ

"ଜୀବନେ ତୁମର କାରାବରଣ ତ ହୋଇ ପାରେ ନାହିଁ ଦୁଃଖ,
ଗଭୀର ବିଷାଦେ ଗାନ୍ଧୀଜୀ କିଆଁ ମଳିନ ଦିଶୁଛି ମୁଖ ?
ପ୍ରଭୁବର ତବ ସ୍ୱାସ୍ଥ୍ୟ ନାହିଁ ତ ଶରୀର ହୋଇଛି ଖିନ
ନୟନ ଆନନ ଦେଖାଯାଉଅଛି ନିସ୍ତେଜ ନିମଳିନ ।
ଜୀବନର ପଥେ ପଥେ ଆଜ ମୋର ବୟସ ଗଲାଣି ଛୁଇଁ
ସୁସ୍ଥ ସତେଜ ଉତ୍‌ଫୁଲ୍ଲ ତଥାପି ରହିଛି ମୁହିଁ ।"

ୟାରବାଡ଼ା କାରାବାସେ
କବି ରବୀନ୍ଦ୍ର ସାକ୍ଷାତ କରି ପଚାରିଲେ ଧୀର ଭାଷେ ।

"କବି ପରା ତୁମେ କଲ୍ପନାମଗ୍ନ ଜୀବନ ତୁମର ଆଗେ,
ଜୀବନର ଶତ ପରାଜୟ ବୁକେ ବିଜୟ କେତନ ଜାଗେ ।
ଜୀବନେ ମୋହର ରାଜମାର୍ଗ ବୋଲି ଧରିଅଛି ଯେଉଁ ପଥ,
ପଦେ ପଦେ ତାର ଲାଗିରହିଅଛି ଝଞ୍ଜା ଝଟିକା ଶତ ।
ଦେହେ ମନେ ସଦା ଦିବସ ରଜନୀ ଆଘାତ ବାଜୁଛି ଆସି,
କେତେ ଜୀବନର ଜଞ୍ଜାଳ ଜ୍ୱାଳା ନୟନେ ପଡ଼ୁଛି ଝାସି,
କେତେ ଯେ ଭାବନା କରେ,
କେଉଁପରି ମୁହିଁ ସୁସ୍ଥ ସଚେତନ ରହିବି ଏ ଧରାତଳେ ?"

କବି-ଚିତ ତହୁଁ ମମତାର ସାଥେ କହିଲେ 'ମମତା ଡାକି,
"ଭାବନାର ଧାରା ଏଡ଼ିଦେଇ କେବେ କବି କି ପାଇବ ମୁକ୍ତି ?"

"ସତ୍ୟ କହୁଛ ମାତ୍ର ହେ କବି ଅଳକର ଭାବ ମନେ,
ଯେଉଁ ଭରଷିଆ ଉଷାର ଆଲୋକେ କୂଜଇ ପୁଲକ ମନେ ।
ତୁମେ ସିନା ଭାବ ମଞ୍ଜୁ ସ୍ୱତାନେ ବିହଗ ଗାଉଛି ଗାନ,
ସେଇ ଗୀତ ସ୍ୱରେ ଝଂକୃତ କର ଉଠିଲା ତୁମର ପ୍ରାଣ ।
ତୁମେ ସିନା ଭାବ ପ୍ରଭାତର ପକ୍ଷୀ ଉଷାର ସ୍ୱାଗତ ରଚେ
ମାତ୍ର ହେ କବି ସେ ଭାବନା, ହେଇ ସବୁର ମୁଁ ବନ୍ଧୁ ନିଜେ ।
ମନେ ମୁଁ ଭାବଇ ପୂରୁବ ଦିନ ଯେ କାଟିଥିଲି ସେଣ୍ଟ-ଛିନ୍ନ,
ମାଡ଼ି ଶୟନରେ ନିବିଡ଼ ନିଦରେ ଶୋଇଥିଲି ମନାସୁଖେ ।
ନକର ଚିକଏ ହେଳା
ପ୍ରଭାତର ଡାକେ ଯାହାର ପଥେ ପୁଲକେ ବାହାରି [illegible]

ତୁମେ ସିନା ଶୁଣ ସଙ୍ଗୀତ ତାର ମୁଁ ଖୋଜେ ତାହାର ହାଡ଼
ତୁମେ ଦେଖ ଯେଉଁ ପଦ୍ମ ଫୁଲଟି ମୁଁ ଦେଖେ ତାହାର ନାଡ଼ ।"

‘‘ଦରଶ ଦେ ଆଜ ଶ୍ଳାଘ୍ୟ ଜଗତେ ତୁମ ଜୀବନର ଧାରା
ସେଇଥି ସକାଶେ ଜନ-କଲ୍ୟାଣେ ତୁମେ ବରିଅଛ କାରା ।
ତୁମକୁ ଦେଖିବା ଆଶେ,
ତୁମକୁ ଦେଖିବା ପାଇଁ ମୁହିଁ ସିନା ଆସିଚି ଏ କାରାବାସେ ।"

—o—

## କୋଟନିସ୍ ଆଉ ଫେରିନାହିଁ

ସୁଦୂର ଚୀନା ସମରାଙ୍ଗନୁ
କୋଟନିସ୍ ଆଉ ଫେରି ନାହିଁ
କିଏ ସେ କହୁଛି ମରିଗଲା ବୋଲି
ମୁଁ କହୁଛି ସିଏ ମରିନାହିଁ ।
ଭାରତର ନୁହେଁ, ଚୀନାର ନୁହେଁ
ଆଜି ସେ'ତ ସାରା ଭୁବନର
ଅସ୍ତ-ବିହୀନ ଶୁଭ୍ର ତାରକା
ନିଖିଳ ହୃଦୟ ଗଗନର ।
ମୃତ୍ୟୁ ତାହାର ଅମର ଆତ୍ମା
ଛୁଇଁ ପାରେ ? ଛୁଇଁ ପାରେନାହିଁ···
କିଏ ସେ କହୁଛି ମରିଗଲା ବୋଲି
ସେ କହୁଛି ସେ ସେ ଆତତାୟୀ ।

ଚୀନାର ବୁକେ ଜାପାନର ଦେଖି
ଧ୍ୱଂସ ସମର ଲୀଳା,
ଭାରତ ଆମର ସମବେଦନାର
ସୈନ୍ୟ ପଠାଇଥିଲା ।

ବକ୍ଷେ ନ ଦେଇ ସ୍ୱାର୍ଥ ବାସନା
ଅଶ୍ରୁ ନିବେଦଇ କରେ,
ମଣିଷ ସେବାର ଧୈର୍ଯ୍ୟ ସାଧନା
ଦେଇଥିଲା ଅନ୍ତରେ ।

ସେ ଦଳର ଏକ ଯୋଦ୍ଧା ସେ ଥିଲା
ତ୍ୟାଗର ଘଣ୍ଟା ବଳି,
ଚୀନାର ବୁକେ ମାଇଥିଲା ତାର
ସପ୍ତ ଜୀବନ ଧଳି ।

କମାଣ ଜାଳଇ ମଣିଷ ଜୀବନ
ଗୁଳି ଯେଉଁ ପଥ ଦାଣ୍ଡେ
ମଣିଷର ସେବା କରୁଥିଲା ସିଏ
ସଂଗ୍ରାମ-ଭୂଇଁ ପ୍ରାନ୍ତେ ।

ଅଜଣା ଅଦେଖା ଜନେ ସେ ପଲକେ
କରିନେଲା ଆପଣାର ।
ବୁକୁର ରକତ କରିନେଲା ତାର
ସ୍ୱପନର ଲୁହ ଧାର ।

ଧୋଇ ଦେଲ ସେହ୍ନ ନୟନର ଲୁହେ
କେତେ ଆହତର ଲହୁ,
ଆହତ ଜନର ଆରତ୍ତି ନେବାରେ
ଆଘାତ ସହିଲ ବହୁ ।

ନିଃଶେଷ କରି ଦେଲ ଆପଣାକୁ
ପର ପାଇଁ ଖାଲି ପର ପାଇଁ;
କିଏ କେମ କହୁଛି ମରିଗଲ ବୋଲି ?
ଫ୍ଲୋରେନସ୍ ସେ ତ ଫେରିନାହିଁ ।

ସେ ଦେଶ ଉତ୍ସବେ ଜୀବନ-ରକ୍ତ
ରକ୍ତର ତେଜ ଢାଳି,
ଜାଳିଦେଲ ତାର ତ୍ୟାଗର ମଶାଲ
ଆପଣାକୁ ଦେଲ ଜାଳି ।

ବୃଟନା ଦେଶର ହଜାର ହଜାର
ହୃଦ ଆବରଣ ଚିରି,
ଭରିଦେଲ ନବ ଧୈର୍ଯ୍ୟ ସାଧନା
ତ୍ୟାଗର ଅରୁଣ-ଶିଖା ।

ଯହିଁରେ ଭାରତ ଉତ୍ତର ନଭେ
ଧ୍ରୁବ ତାରକାର ପ୍ରାଣେ,
ଆତ୍ମା ତାହାର ନର୍ତ୍ତି ଉଠୁଚି
ଦୀପ୍ତ ଆଲୋକ ଗାନେ ।

ଚରଣେ ଚରଣେ ଅମର ଜୀବନେ
ବନ୍ଧୁ ଉଚ୍ଛ୍ୱସିତ ଅବଗାହ୍ନ,
କଏ ସେ କହୁଚି ମରିଗଲ ବୋଲି ?
କୋଟିନିଯ୍ ସେ ତ ଫେରନାହିଁ ।

—o—

# କୌମୁଦୀର ଅବଦାନ

"ବିଶେଷେ ମାଗୁଣି ମୋର ମାତୃଜାତି ପାଶେ ।"
ବଡ଼ଗଡ଼-ସଭା ମଞ୍ଚେ ବାପୁଜୀ ଉଲ୍ଲାସେ
ସମ୍ଭାଷିଲେ, "ହରିଜନ, ତୁମେ ସବୁ ଜାଣ
ଆମର ଏ ଦେଶେ ପାଏ କେତେ ଅପମାନ !
ଆଜ ସେଇ ଅପମାନ ଦୂରିବାର ଲାଗି
ମହାଭିକ୍ଷୁ ବୁଲେ ମୁଁ ଯେ ଭିକ୍ଷା ମାଗି ମାଗି ।
ମୋର ଆବେଦନ, ଏତେ ସ୍ୱର୍ଣ୍ଣ ଅଳଙ୍କାର
ବସ୍ତ୍ରଅନ୍ତ ଆପଣାର ଅଙ୍ଗ କରି ଭାର ।
ତୁମେ କଣ୍ଠୁ କଣ୍ଠୁ ତହୁଁ କର ଆଜ ଦାନ,
ଜଗତର ଆଗେ ରଖ ସ୍ୱଜାତିର ମାନ ।

ପରେ···ପରେ···ମଂଚପରେ କଳ କୋଳାହଳେ
ଫୁଲ ହୋଇଗଲା ଦାନ ଗାନ୍ଧି ପଦତଳେ ।
କେ ଦେଲା ନାସାର ମୋତି କେହ୍ମ କର୍ଣ୍ଣପୁର,
କେ ଦେଲା ବଳୟ୍ଵ ଅବା କେ ଦେଲା କେୟୂର
କେ ଦେଲା କଣ୍ଠର ସ୍ଵର୍ଣ୍ଣମାଳା ।

ମାତ୍ର ଦେଖ,
କୌମୁଦୀ ସେ ମାଳବାସୀ କୁମାରିକା ଏକ
ଅଙ୍ଗୁ ତାର ଖୋଲିଦେଲା ସକଳ ଭୂଷଣ
ହସ୍ତୁ ଦେଲା ଦୁଇଟି ଯା' କନକ କଂକଣ
କଣ୍ଠତୁ ଫିଟାଇ ତା ଜମ୍ବୁନଦ ହାର,
କୁତୂହଳେ ତୋଳି ଦେଲା ପୂଜା ଉପହାର
ସବିସ୍ମୟେ ଜଜ୍ଞାସିଲେ ତହୁଁ ମହାତ୍ମାଜୀ,
"ତୁମର ଏ ଦାନେ ତୁମ ପିତାମାତା ରାଜି ?"

ଉତ୍ତର ସେ ଦେଲାନାହିଁ । ଆତୁର ଦାନ ସେ
ସପିଦେଲା ଉତ୍କଣ୍ଠିତ ଉତ୍‌ଫୁଲ୍ଲ ମାନସେ ।
କର୍ଣ୍ଣ ଦେଶୁଁ ଦେଲା ପୁଣି ସ୍ଵର୍ଣ୍ଣ ଅବତଂସ
ଅଧର ନୟନ ତାର ଦୀପ୍ତ ହସ ହସ
ନବରାଗେ ।

ପଚ୍ଛରିଲେ ପୁଣି ମହାତ୍ମାଜୀ,
"ତୁମର ଏ ଦାନେ ତୁମ ପିତାମାତା ରାଜି ?"

"ମହତ୍ ଲକ୍ଷେ ମୁଁ ମୋର ଅଳଙ୍କାରମାନ
ଅନାବିଳ ଚିତ୍ତେ ଏ ଯେ କରୁଅଛି ଦାନ
ମହାତ୍ମା ଚରଣ ତଳେ । ତେବେ କାହିଁ ପାଇଁ
ଏଥି ମୋର ପିତାମାତା ରାଜି ହେବେ ନାହିଁ ?"
ବାଳିକାର ଅବଦାନ ବାଳିକାର କଥା
ସଚକିତେ ଶୁଣିଥିଲେ ବିପୁଳ ଜନତା ।
ଧୀରେ ଅତି ଧୀରେ ପୁଣି ପୁଚ୍ଛିଲେ ବାପୁଜୀ,
"କଲ୍ୟାଣି ଗୋ, ଏଥି ସବୁ ପାରୁଛ ତ ବୁଝି ?"
ଦେଉଛ ଯେ ଅଳଂକାର ଏ ଯେ ଆଭରଣ
ଆଉ ତ ପିନ୍ଧିବା ଲାଗି ନ କରିବ ମନ
ସୁଦୀର୍ଘ ଏ ଜୀବନେ ତୁମର ?"
"ମହାତ୍ମନ୍,
ସକଳ ପାରୁଛି ବୁଝି ମୋହର ଏ ମନ
ସ୍ୱର୍ଣ୍ଣ ରୌପ୍ୟ ଅଳଙ୍କାର ଅଙ୍ଗ ଆଭରଣ
ଧରିତଳେ ନୁହେଁ କେବେ ନାରୀର ଭୂଷଣ
ହୃଦୟର ବିକଶିତ ସଦ୍‌ଗୁଣ ନିଚୟ
ଚିର ଅମଳିନ ତାଇ ହେଉ ମୋ ସଞ୍ଚୟ ।
ଆଶୀର୍ବାଦ କର ମୋତେ ନ ଲୋଡ଼ିବ ଆନ
ଅଳଙ୍କାର ।"
ବାଳିକାର ହୃଦୟେ ସ୍ପନ୍ଦନ
ଦେଖି ପାରିଲେ ସେ ଏକ ଅପାର୍ଥିବ ବଳ
ନବ ଛବି, ଶୁକ୍ତି ବୁକେ ନବ ମୁକ୍ତାଫଳ ।

"ଅବଦାନୀ, ଆଶୀର୍ବାଦ ଦେନ ମୋର ଆଜ"
ହର୍ଷ ଗଦଗଦ କଣ୍ଠେ ଗାନ୍ଧି ମହାରାଜ
ଜଣାଇଲେ, "ତୁମେ ଯେଉଁ ଅଳଙ୍କାରମାନ,
ହରିଜନ-ଜନ୍ମସ୍ଥଳେ ଖୋଲି ଦେଲ ଦାନ
ମୋର କରେ, ମୂଲ୍ୟ ତାର ମୁଁ ଜାଣିବି ସିନା
ମାତ୍ର ଯେଉଁ ଅବଦାନ ଆଗୋ ଅର୍ବାଚୀନା
ଏ ଧରଣୀ ବୁକୁପରେ ଗଲ ତୁମେ କରି
ମୂଲ୍ୟ ତାର · ମୂଲ୍ୟ ତାର କେ ପାରିବ କଳି ?"



# ଗୁର୍ଖା ସିପାହୀ

ଅଂଜନ-କଳା          ଧୂଆଁର ବାଦଲ
ଅମ୍ବର ପଥେ ଘୁଡ଼ି
ଇଷ୍ଟେସନର          ବକ୍ଷ ଉପରେ
ଛୁଡ଼ା ହୋଇଗଲା ଗାଡ଼ି
ମିଳିତ କଣ୍ଠ          ମିନତି ଉଠିଲା
"ଗୁର୍ଖା ସିପାହୀ ଭାଇ,
ହିନ୍ଦୁ ହୋଇ କି          ହୃଦୟେ ତୁମର
ବିନ୍ଦୁ କରୁଣା ନାହିଁ ।
କେତେଦିନ ହେଲା          ଏ ଜୁଆଲାପୁରେ
ଆଶ୍ରା ନେଇଛୁ ବାବୁ
ପ୍ରାଣ ନେଇ ଆମେ          ପଳାଇ ଆସିଛୁ
ପଶ୍ଚିମ ପଞ୍ଜାବୁ ।
ସାହାରାନପୁରେ          ଏ ଗାଡ଼ି ନେଉଛି
ବହୁତ ମୁସଲମାନ
କାଲି ସନ୍ଧ୍ୟାରେ          ଏହିଠାରୁ ଆମେ
ପାଇଅଛୁ ସନ୍ଧାନ !

ମରମ ଭିତରୁ ଡାକ ଉଠୁଅଛି
ପ୍ରତିଶୋଧ, ପ୍ରତିଶୋଧ,
ଦୁଆର ଝିକଏ ଖୋଲି ଦିଅ ବାବୁ
ମନ କରି ନେଉ ବୋଧ ।"

ଗୁର୍ଖା ଫଉଜ ଦର୍ପ ଦେଖାଇ
ଗର୍ଜି ଉଠିଲ ସଙ୍ଗେ
"ଆମର ହାତରେ ଗୋଳା ବନ୍ଧୁକ
ପଡ଼ୁଚି ତ ଆଖି ଆଗେ ?
କରୁଣା କରୁଚୁ ଯାଅ ଚାଲି ଯାଅ
ଛାଡ଼ି ଏ ଇଷ୍ଟେସନ
ବଞ୍ଚାଇଛ ଯେ ଆତ୍ମା କାହିଁକି
ହରାଇବ ଅକାରଣ ।"

ମତ୍ତ ଜନତା ଉତ୍ତର ଦେଲ
"କି କହୁଚ ତୁମେମାନେ
କପରି ଜାଣିବ ଆମେ ଯେ ମରୁଚୁ
ଲାଞ୍ଛନା ଅପମାନେ ।
ଘର ଦୁଆର ବା ଧନ ସମ୍ପଦ
ଧ୍ୱଂସ ହୋଇଚି ଯାହା
ଦୁଇଦିନ ପରେ ଫେରାଇ ଆଣିବୁ
[illegible] ଅଛି ଯେ ଆମର ବାହା ।

ଆମର ଉପରେ ଯାହା ଯା' କରଛୁ
ଏ ମୁସଲମାନ ଜାତି,
ସେ ସବୁର ସ୍ମୃତି ମର୍ମେ ରହିବ
ରକ୍ତ ରହିବ ତାତି ।
ଦଗ୍‌ଧ ହୋଇବ ଘର ସଂସାର
ସ୍ନେହ ମମତାର ଭିଡ଼
କାହିଁ ଅଛୁ ନାସ୍ତି, କାହିଁ ସେ ପୁରୁଷ
ନଷ୍ଟ ଆମର ନୀଡ଼ ।
ମର୍ମ ଭିତରୁ ଡାକ ଉଠୁଅଛି
ପ୍ରତିଶୋଧ, ପ୍ରତିଶୋଧ,
ଦୁଆର ଟିକଏ ଖୋଲି ଦିଅ ବାବୁ
ମନ କରି ନେଉ ବୋଧ ।"

"କପଟ କରବୁ" ସିପାହୀ କହିଲେ,
'ଯା' କହୁଛ ତୁମ୍ଭେମାନେ
ସର୍କାର ଯେଉଁ ହୁକୁମ ଦେଇଛି
ତାହାହିଁ ପାଳବୁ ଆମେ ।
ଡେବୁଡ଼ୂନ ଠାରୁ ଉଦ୍ଧାର କରି
ଅଗ୍ରଗା ଏ କେତେ ଜଣ
ସାହାରନପୁରେ ନେଇ ଯାଉଅଛୁ
ଅସହାୟ·· ଅଶରଣ ।

ବୁଝୁଅଛୁଁ ତୁମ ବିକ୍ଷୋଭ ଆଜ
ଜୀବନର ସଂଗ୍ରାମେ
ବାସ୍ତୁହରା ଏ ଶରଣାର୍ଥୀରେ
ରକ୍ଷା କରିବୁ ଆମେ ।"

"ପାକିସ୍ତାନର ସର୍କାର ତେଣେ
କଅଣ କରୁଚି ଜାଣ
ହିନ୍ଦୁ ଜାତିର ଧ୍ୱଂସ ସକାଶେ
ଗଢ଼ୁଚି ଉପାୟମାନ ।
ଦୁନିଆ ପାକର ଆତତାୟୀ ଆଣି
କରାଉଚି ଏକଜୁଟ୍
ହିନ୍ଦୁ ଜାତିର ଇଜ୍ଜତ ଜାନ
ସବୁ କରାଉଚି ଲୁଟ ।
ମାତ୍ର ଆମର ସର୍କାର ଏଣେ
କରାଉଚି ପ୍ରତିରୋଧ
କେଉଁପରି ଆମେ ଅବମାନନାର
ନେବୁ ଭଲ ପ୍ରତିଶୋଧ ?"

"ତୁମେ ତ ଜାଣିଚ କେତେଦିନ ତଳେ
ନୂଆଖାଲି କଥା ଲାଗି,
ମୁସଲମାନରେ ହତ୍ୟା କରିଲ
ବିହାର ଯେ ଦିନ ଜାଗି ।

ଜବାହରଲାଲ      ହୁକୁମ ଦେଲେ ଯେ
ଷ୍ୱହାର ଭୂଇଁର ବୁକେ
ହଜାର ହଜାର      ହିନ୍ଦୁ ଝଡ଼ିଲେ
ଗୁଳି ବନ୍ଧୁକ ମୁଖେ ।
ସେଇ ସର୍କାର      ଆମ ଏ ଭାରତେ
ଶାସନ କରୁଚ ଆଜ,
ପରିଣାମ କହୁ      ଭାବ ପାରୁନାହିଁ
ଦେଖୁଚ କ ଗୁପ୍ତାବାଜ ?
କହୁଚ ଆମେରେ      କରୁଣା କଲୁଣି
ଦେଲୁଣି ବହୁତ ବେଳ
ବନ୍ଧୁକ ଆଗେ      ଅକାରଣେ ଆଜ
ବରନା ମରଣ ଖେଳ ।"

"କାହାକୁ ଆମେରେ      ଚିନ୍ତ କରୁଚୁ
ମରଣ ଯେ ଆମ ଖେଳ,"
ଆଖିର ନିମେଷେ      ଜନତା ହିନ୍ଦୁ
ହୋଇଗଲ ଉଦ୍‌ବେଳ ।
କଣ୍ଠର ସେଲେ      କାହାକଥା ଆଉ
କେହି ନ ଶୁଣିଲେ ଜମା,
ଖୋଲା କାତାସ୍ତୁନେ      ଗାଡ଼ି ଭିତରକୁ
ଫିଙ୍ଗିଲେ ହାତବୋମା ।

ଗାଡ଼ିର ଭିତରେ ଶହ ଶହ ଲୋକ
ପଲକେ ପଡ଼ିଲେ ଟଳି,
ଗୁର୍ଖା ସିପାହି କଅଣ କରିବେ
ପାରିଲେନି ଅସ୍ତ୍ରଧରି ।
ଗୁଡ଼ୁମ୍ ଗୁଡ଼ୁମ୍ ଆବାଜେ ସେଲ୍ମଗେ
ଫୁଟାଇଲେ ବନ୍ଧୁକ ।
ଖୁଲା ମୁଖେ ତହିଁ ଭକ୍ତ ହୋଇଲେ
କେତୋଟି ମୃତ୍ୟୁ-ଭକ୍ତ ।

———

## ସ୍ମୃତିର ଫଳକ

ପଥିକର ଚିତ୍ତଘରେ
ଯେବେ ଏଇ ପ୍ରଶ୍ନ ଜାଗେ
କାଠଯୋଡ଼ି ନଈ ବନ୍ଧ-ପରେ କାହିଁ ଏଇ ସ୍ମୃତିର ଫଳକ ?

ନଈର ପ୍ରବାହଜଳେ
ବାଜି ଉଠେ କଳକଳେ—

କରିଥିଲା ମରଣ ବରଣ ଏଥି ଏକ ତରୁଣ ଯୁବକ
ନାମ ତାର—
ହେମନ୍ତ କୁମାର ।

ପଉଷ ମାସର ଦନ
ଆକାଶ କୁହେଳ-ହୀନ
ଝରୁଥିଲା ରବରଶ୍ମି ଧାର
ନଈର ପ୍ରବାହ ପରେ,
କଳକଳେ ତରତରେ
ଖେଳୁଥିଲା ଲଦୁ ଊର୍ମିମାଳା ।

ଘାଟେ ଘାଟେ ଲାଗିଥିଲା
କଟକର ସ୍ନାନ ଲୀଳା
ଧୀରେ ମୃଦୁମନ୍ଦେ,
ଚପଳ କିଶୋରଗଣ
ରଚୁଥିଲେ ସନ୍ତରଣ
ଛନ୍ଦହୀନ ଛନ୍ଦେ ।

ସହସା ଉଠିଲା ପୁଣ
ଉଚ୍ଚ କୋଳାହଳ ହୁର
"ବୁଡ଼ିଗଲା କିଏ ଗଲା ବୁଡ଼ି"
ନହେଉ ମୁହୂର୍ତ୍ତ ଏକ
"କିଏ ଅଛ ଦେଖ ଦେଖ"
ବ୍ୟଗ୍ର କଣ୍ଠ ପଡ଼ିଲା ଉଚ୍ଛୁଳି ।

ଚଳେ ଗଣ୍ଡ ସୁଗଣ୍ଡର
ପୂରଚ ଅଗାଧ ଘାର,
ଘୂର୍ଣ୍ଣି ଜାଗି ଉଠେ ବାର ବାର,
ନାହିଁ ଡର ନାହିଁ ଭୟ
ମନ ଧରେ ନାହିଁ ଥୟ
ଝାମ୍ପ ଦେଲ୍ ହେମନ୍ତ କୁମାର ।

ଜଳର ଅଚଳ କକ୍ଷ
ଅଜ୍ଞାତ ଗୁପଚ ବକ୍ଷ
ବାହୁଯୁଗେ ବଦାର ବଦାର,
ରୁଦ୍ଧଶ୍ୱାସେ
ଜଳୋଚ୍ଛ୍ୱାସେ
ବାହାର ପଡ଼ଲ୍ ଚଳେ ସମ୍ଭାଳ ନପାର ।

ପୁଣି ସେ ବୁଡ଼ଲ୍ ଚଳେ
ଏଣେ ଜଳ ବୁକୁପରେ
ହଚଭ୍ରଗା ଦେଖାହେଲ୍ ଆସି,
ବହୁ କଣ୍ଠ "ହେଇ, ହେଇ"
ଜଠିଲ୍ ମାଚର, କେହ୍ବ
ସ୍ରୋତ ଜଳେ ପଡ଼ଲେନ ଝାସି ।

ଯେକଟି ବୁଡ଼ିଲା ଯେବେ
ହେମନ୍ତ କୁମାର ତେବେ
ଜଳ ଗର୍ଭ ପଡ଼ିଲା ବାହାର,
ଅମିତ କଣ୍ଠର ସ୍ୱରେ
ପୁଣି ସେ ଡୁବିଲ ଖରେ
ପୁଣି କ ବସ୍ଥର ।

କେତେକ୍ଷଣ ତଳେ ଉନ୍ଥ
ଡୁବନ୍ତ ସେ ଜନେ ବନ୍ଧ
ଉଠିଲା ଉପରେ,
ହରଷର
କୋଳାହଳ
ଉଠିଲା ସଭରେ ।

ସୋପାନର ସ୍ରୋତ ପ୍ରାନ୍ତେ
ଠେଲି ଦେଇଁ ଲଦ୍ଦୁହାତେ
ଘାଟ ଲୋକେ ତୋଳନେଲେ ତାରେ
ମାତ୍ର ଆସି କାଳ ପ୍ରାପ୍ତେ
ଆବର୍ତ୍ତିତ ତେଜଟାଏ
ଟାଣିନେଲା ହେମନ୍ତ କୁମାରେ ।

ପୁଣି ସେଇ ଆର୍ତ୍ତସ୍ୱର,
ସେଇପରି କୋଳାହଳ,
ସେଇପରି ଡ଼ର,
ନଘା ଛଟ୍
ଶତକଣ୍ଠ୍
ପଡ଼ଲା ଉଚ୍ଛୁଳ ।

ଅମାନିଆ ଯୁବାଦଳ
ନଗଣି ଆଶଂକା ଡର
ଝାମ୍ପ ଦେଲେ ଆବର୍ତ୍ତିତ ମଝରେ,
ମାତ୍ର ଖୋଜ ଖୋଜ କାହିଁ
ଆଉ ତ ପାଇଲେ ନାହିଁ
ମହାପ୍ରାଣୀ ହେମନ୍ତ କୁମାରେ ।

ବିଶ୍ୱର କଲ୍ୟାଣ ଆଶେ
ମରଣ ଯେ କରଇ ବରଣ
ମର ଏ ମରତ ପଥେ
ସେଇ ଏକା ଲଭଇ ଜୀବନ ।
ସେଇ ଜୀବନର ଲାଗି
ଶତ ପ୍ରାଣୁ ଗଲା ଯେ ଲୋକଙ୍କ,
ସେ ଲୋକଙ୍କେ ଜାଗି ଅଛି
ଆଜ ଏଇ ସ୍ମୃତିର ଫଳକ ।

---

## ଷଣ୍ଢ

ସୁଜନ-ସିକତା ପ୍ରାନ୍ତର ବୁକେ ରୁହିଁ ରୁହିଁ ରହି ରହି
ମନ୍ଥର ପଦେ ବଢ଼ି ଯାଉଥିଲା ମତ୍ତ ହୁଗୁଳି-ନଈ ।
ଚିତାନଳ ତହିଁ ସଜା ହେଉଥିଲା ଏକଇ ଷଣ୍ଢର ଲାଗି
ବିପୁଳ ଜନତା ଠିଆ ହୋଇଥିଲା ଦର୍ଶନ-ଅନୁରାଗୀ ।
ଶାସ୍ତ୍ରର ଷଣ୍ଢ ସେଇ ଷଣ୍ଢବାଡ଼ ପରିଚାଳନାର ପାଇଁ,
ହୁଗୁଳି ଜିଲାର ଶାସନକର୍ତ୍ତା ମୁହିଁ ଯାଇଥିଲି ତହିଁ ।
ମୋହର ସାଥିରେ ଯାଇଥିଲେ ସେଇ ଷଣ୍ଢବାଡ଼ ଦରଶନେ
ପୋଲିସ ସାହେବ ପାଦ୍ରୀ ସାହେବ ଅତି ଉତ୍ସୁକ ମନେ ।

ପାଶ୍ୱେ ତାହାର ବସିଥିଲା ସଖି ମୌନ ଧ୍ୟାନ ଧରି
ଦଶୁଥିଲା ସତେ ନିବାତ ନିଥର ପ୍ରଦୀପ ଶିଖାଟି ପରି ।
ମାତ୍ର ସହଜେ ଫୁଟି ଉଠୁଥିଲା ନିର୍ମଳ ତାର ମୁଖେ,
ଯେଉଁ ଉଦବେଗ ଯେଉଁ ଆକୁଳତା ଫୁଟିଥିଲା ତାର ବୁକେ ।
ବହୁତ ପ୍ରକାରେ ବୁଝାଇ କହିଲେ ମୋର ଏ ବନ୍ଧୁ ଦୁଇ
ବହୁତ ପ୍ରକାର କ୍ଷମତା ଦେଖାଇ ବୁଝାଇଲ ପୁଣି ମୁହିଁ ।
"ମନ୍ତ୍ର ଗୁଣଗଲେ ଆଉ କି ଫେରିବେ ? ବୃଥା କିଆଁ ଦେବ ଝାସ,
ଅନ୍ତର ତନୁ ମୁଁଅ ଏ ଭାବ ମୁଁଅ ଏ ଅଭିଳାଷ ।"

କଂପିତ ସ୍ୱରେ ଜଣାଇଲା ସଖି, "ଏକ କହ, ମହାଶୟ,
ବାର ନାହିଁ ମତେ ତନ୍ତ୍ର, ଯେଉଁପଥେ ଆଜ ମୋ ପ୍ରାଣର ଲୟ
ତଉ ମୋହର କଣ୍ଠିତ ତନ୍ତ୍ର ଫେରାଇ ପାରିବ ନାହିଁ,
ସେ ପଥରୁ ତୁମେ କ୍ଷମତାର ବଳେ ବଞ୍ଚିତ କରନାହିଁ ।
ଶରୀର ଭିନ୍ନ, ଆତ୍ମା ଯେ ଏକ କେ ନ ଜାଣେ ଏ ଜଗତେ ?
ଏଇ ମୋହ ଦେହ ଚିତାନଳେ ଜାଳି ମିଳବି ମରଣ ପଥେ ।
ଅନ୍ତର ମୋର ହୋଇଲାଣି ଆସି ଚଞ୍ଚଳ ଅତିଶୟ ?
ଚଞ୍ଚଳ ମୋତେ ଅନୁମତି ଦିଅ, ଦିଅ ହେ ମହାଶୟ ।"

ବଚନରେ ମୋର ଦଗ୍ଧାମାଧ୍ୟାହ୍ନ ଗ୍ରଜମନ୍ତ ଚରକାଣି
ସଙ୍ଗୀ ସମ୍ମୁଖେ ଲୁଣଚା-ଭଗ୍ନ ସମ୍ବାଦ ଦେଲା ଘୋଷି,
"ଯିବ ଯେ କହୁଚ ମୃତ୍ୟୁର ପଥେ ଯିବ ଯେ କହୁଚ ତୁମେ
ବୁଝି ପାରୁଚ ତ ଚଣ୍ଡାଳଙ୍କନ କଅଣ ଜୀବନ ଭୂମେ ?
ସମାଜ-ନିର୍ଦ୍ଦେଶ ଶିରେ ବନ୍ଧୁ ତୁମେ ଆସିଅଛ ଏଇଠାବେ
ସଂଶୟ-ଭଗ୍ନ ଅନ୍ତରେ ମୋର ଗଣ୍ଡିରଚର ମୁଁ ଘାବେ ।
କଣ୍ଟକେ ପଦ ନମୂନା ଛାଡାର ଦେଖାଇ ପାରିବ ସଙ୍ଗୀ,
ଅତି ଆଗ୍ରହେ ଅତି ଚଞ୍ଚଳ ଦେବ ମୁହିଁ ଅନୁମତି ।"

ଦୃଷ୍ଟିତ ନୟନେ ଶାଣିତ ଗୁହାଣି ଅନାଇ କହିଲା ସିଏ,
"ସନ୍ଦେହ ଯେବେ ଚଞ୍ଚଳ ଏବେ ଅଣାଅ ପ୍ରଦୀପଟିଏ ।"
ହସ୍ତିଦାନ୍ତ ଲଗି ଯେତେକ ପ୍ରଦୀପ ଅଣାଯାଇଥିଲା ହାତେ
ମୋହନ ଆଦେଶେ ତହିଁରୁ ଗୋଟିଏ ଦିଆଗଲା ସଙ୍ଗୀ-ହାତେ
ଜଦବେଗ ସଙ୍ଗୀ ତେଲ ଅଜାଡ଼ି ପ୍ରଦୀପ ସଜାଡ଼ି ନେଲା
ବହ୍ନି ଲଗାଇ ଅତି ଚଞ୍ଚଳ ବର୍ତ୍ତିକା ଜାଳି ଦେଲା ।
ଧୈର୍ଯ୍ୟ ଧରି ସେ ଡାହାଣ କହୁଣୀ ଥୋଇଲା ବାଲୁକାପରେ
ଦୀପ୍ତ ଶିଖାରେ ଅଙ୍ଗୁଳିଟିଏ ନିକ୍ଷିଲା ଦରଷରେ ।

ପୋଡ଼ି ଯାଉଥିଲା ଅଙ୍ଗୁଳି ତାର ଆମେ ରହିଥାଉ ଚାହିଁ,
ବେଦନାର ରେଖା ବଦନେ ତାହାର ମୁଦ୍ରିତ ହେଲା ନାହିଁ ।
ପଲକେ ପଲକେ ଅଙ୍ଗୁଳି ତାର ଜଳି ଜଳି ପୋଡ଼ି ପୋଡ଼ି
ହୋଇଗଲା ମୋଡ଼ି ମୋଡ଼ି ।
ଶିଖାରେ ତାହାର ଅଙ୍ଗୁଳି ଗୋଟି ପରି କଳମଟି ପ୍ରାପ୍ତ
ଦେଖାଗଲା ଯେବେ ସଖି ପଚାରିଲା, "ଆଜି କବା ତୁମେ ବୁଝି ?
ଆଜି କାହିଁ ପାଇଁ ଉତ୍ତର କରୁଛ ଦିଅ ଏବେ ଅନୁମତି,
ଦେବତାର ପ୍ରିୟ ଚରଣ କମଳେ ଉତ୍ସୁକ ମୋର ମତି ।"

ପରମ ହରଷେ କହିଦେଲା ମୁହିଁ, "ଯାଅ ଏବେ ସଖି, ତୁମେ
ପରାଧୀନ ମୁହିଁ ଧୃଷ୍ଟତା ମୋର କ୍ଷମିବ ଉଦାର ଗୁଣେ ।"

ଶୁଣି ଶୁଣି ସଖି ଆକୁଳ ଆବେଗେ ଅନ୍ତରେ କବା ଧାଇ,
କୋରକତ କରେ ପ୍ରଣତି ବହିଲା ଶୂନ୍ୟ ଗଗନେ ଚାହିଁ ।
ସମବେତ ସେଇ ଜନତାର ଆଗେ ପୁଲକ ବିଭୋର ମନେ
ସୁକୁମାର ତାର ତନୁ ପାତିଦେଲା ସଜ୍ଜିତ ଇନ୍ଧନେ ।
ପରାଣ ପକ୍ଷୀର ଉଡ଼ନ୍ତା ଅତି ଆଦରେ ଶରଧାଭରେ
ଅଶେଷ ସମ ଜଣାଇଲା ସଖି ଆପଣାର ଘୃତପରେ ।

ଆତ୍ମୀୟ ଜନ ଘୂରିଲେ ଅରୁଣ ଶିଖାର ଚତୁରଧାରେ
ହୁଳହୁଳି ଧ୍ୱନି ହରିବୋଲ ଧ୍ୱନି ଉଠିଲା ଉଚ୍ଚ ସ୍ୱରେ ।
ବୁଦ୍ଧ ପ୍ରବେଧା ମନ୍ତ୍ର ଗାଇଲେ ଗମ୍ଭୀର ସ୍ୱର ମେଳି
ଶଙ୍ଖ ବାଜିଲା ମଙ୍ଗଳ ଘୋଷେ ବାଜିଲା ବାଦ୍ୟ ଭେରି ।
ସଜ୍ଜା ଉପରକୁ ବିଞ୍ଚିଲେ ଜନେ ଦୁର୍ବାକ୍ଷତ ଫୁଲ
ସଜ୍ଜା ଉପରକୁ ସିଞ୍ଚିଲେ ଜନେ ଚନ୍ଦନ କର୍ପୂର ।
ଦିଗ କଂପିତ କରିଲେ ସକଳେ ହରିବୋଲ କୋଳାହଳେ
ବହ୍ନି ଲଗାଇ ଦେଲା କଏ ଜଣେ ଇନ୍ଧନ-ସ୍ତୂପ ତଳେ ।

ଘୃତର ଆହୁତି ହୁତାଶନ ପରେ ବହୁତ ହେବାରୁ ଢଳା
ଆକାଶେ ଉଠିଲା ପୁଞ୍ଜିତ ଧୂମ ପିଞ୍ଜା ବଉଦ ପରି !
ନାଗିଣୀ ପରିଏ ଅଗ୍ନି-ରସନା ଉଠିଲା ଗଗନ-ମୁଖେ
ଯଷ୍ଟ ରହିଥିଲା ନୀରବ ନିଚଳ ଦୀପ୍ତ ଶିଖାର ବୁକେ ।
ସହସା ଗୋଟିଏ କଂପ ଉଠିଲା ବକ୍ଷ ବିତାନ ଭେଦି,
ଶବରୁ ଗୋଟିଏ ଲଂଫ ଉଠଇ ପ୍ରାଣ ପେବେ ଯାଏ ଖେଦି,
ଦେଖୁ ଦେଖୁ ତେବେ ତାହା
ଭସ୍ମ ହୋଇଲା ଧ୍ୱଂସ ହୋଇଲା କାନ୍ତ ତାହାର କାୟା ।

ଚିତାର ସମୀପେ ଦେଖିଲି ମୁଁ ମୋର କାତର ନୟନ-ପାତେ
ସେଇ ସଙ୍ଗାଦାଦ୍ଧ ଚିତ୍ର ସେଦିନ ବିପୁଳ ଜନତା ସାଥେ ।
ଚକିତ ନୟନେ ଦେଖିଲେ ସେଦିନ ମୋହର ବନ୍ଧୁବେନି
ହୃଗ୍ନଳ ଜଳର ସେଇ ସଙ୍ଗାଦାଦ୍ଧ ମୁଗ୍ଧ ଆବେଶ ଯେମା ।
"ସୁହୃଦ ହାଲି ଦେ" ବନ୍ଧୁ ଯୁଗଳ ହର୍ଷେ ଭାଷିଲେ ମତେ
"ସ୍ୱନ୍ଦୁ ନାଗର ନିଷ୍ଠା ଦେଖୁଚୁ ଅଦ୍ଭୁତ ଏ ଜଗତେ ।"
"ଗୋଟିଏ ନୂଆଇ" ଜଣାଇ ଦେଲି ମୁଁ "ବନ୍ଧୁ ଏହାର ସମ
କେତେ ସଙ୍ଗାଦାଦ୍ଧ ଦେଖିଲଣି ମୁହିଁ କର୍ମ-ଜୀବନେ ମମ ।"

— — —

# ନୃତ୍ୟୋତ୍ସବେ

ଅତୀତର ସେଇ ଏକ ଚଇତାଳୀ ସନ୍ଧ୍ୟା
ରୂପ-ରସ-ଗନ୍ଧ-ସ୍ପର୍ଶ-ସ୍ୱର-ଶିଳ୍ପ-ଛନ୍ଦ।
ବନ୍ଦୀ ହୋଇଥିଲା ସତେ ! ଅତୁଳ ସମ୍ମାନେ
ରାଜା ବଇକୁଣ୍ଠ ନାଥ ପ୍ରମୋଦ ଉଦ୍ୟାନେ
ହେଉଥିଲା ନୃତ୍ୟୋତ୍ସବ । ବାଦ୍ୟର ଚମକ,
ଗଣିକାର ନୃତ୍ୟ ଗୀତ ଚକିତ ଚମକ
ସୃଜୁଥିଲା । ସ୍ଥିର ଦୃଷ୍ଟି ଅପଲକ କରି
କବି ସୁଧୀ କଳାବନ୍ତ ରସିକ ମଣ୍ଡଳୀ
ଦେଖୁଥିଲେ ଭାବ ଭୋଳେ । ତୌର୍ଯ୍ୟତ୍ରିକ ଶୁଣି
ଅଦୂର ତରୁର ଶାଖେ ହୋଇଗଲା ତୁନି
ପରଭୃତ । ବାର ବାର ବଜାଇ ନୂପୁର
ପଦନ୍ୟାସେ ବିଳାସିନୀମୁଖର ଆକୁଳ
କରୁଥିଲା ମୂକ ସେ ଅଙ୍ଗନେ, ବୃଶପାଖେ
ଭୂରୁର ବିଭ୍ରମେ ପୁଣି ତରଳ କଟାକ୍ଷେ
ମାରୁଥିଲା ଫୁଲବାଣ, ବିଲୋଳ ବେଣୀରେ ।

ସତେ କି ଖେଳାଇ ଥିଲା ଅସିତ ଫଣୀରେ
ସମ୍ଭ୍ରମେ ! ଠଗଠଣ ହୋଇ ଏକ ଆନେ
ସମବେତ ଜନସଂଘ ଭୁଞ୍ଜୁଥିଲେ ପ୍ରାଣେ
ରସୋତ୍ସବ । ତହିଁ ଏକ ପାର୍ଶ୍ଵର ଆସନେ
ମଉନ ଗମ୍ଭୀର ମୂର୍ତ୍ତି ବସିଥିଲେ ଜଣେ
ଉଦାସୀନ ଭାବ ପରି କେଉଁ ଭାବର ପରଶେ,
ରାଧାନାଥ ଦରବାରେ ଚନ୍ଦ୍ରଶେଖର ସେ
ସତେ କବି !

ପାଇ କାର ମଉନ ଇଙ୍ଗିତ
ସେ ମୂର୍ତ୍ତିର ଆଗେ ଯାଇ ରସୁଆଳ ଗୀତ
ଶୁଣାଇଲା, ଦେଖାଇଲା ପୁଣି ନୃତ୍ୟଶୀଳା
ରସ ରଙ୍ଗ ତରଙ୍ଗର ଅସମ୍ଭୃତ ଲୀଳା ।
ବୁଜ ହୋଇଗଲା ଆଖି, ଉକ୍ରକବି ରାଓ
ମରମେ ମରମେ ପାଇ ଅନ୍ତଜ୍ଜାଳା ଦାହ
ନୟନୁ ଝରାଇ ଦେଲେ ଦୁଇଗୋଟି ଧାର,
କହିଦେଲେ, "ଭଗିନୀ ଲୋ, ଏ କି ଗତି ତୋର ?
ସଖୀଙ୍କ ଦେବୀଙ୍କ, ତୋର ଲଲାଟେ ଲିଖିତ,
କେ ତହିଁରୁ ତୋତେ ବଳେ କଲା ବଞ୍ଚିତ ?"
ଜନତା ରହିଲା ସ୍ତବ୍ଧ

ଚକ୍ଷୁର ନିମେଷେ
ଥମିଗଲା ନୃତ୍ୟୋତ୍ସବ ଚକିତ ଆବେଶେ !

# ପ୍ରାଣର ପରଶ

କେନ୍ଦ୍ରୀ ନଳକୂଳେ ଦାରୋଗା କହଇ
"ନାଉରୀ, ବୁଢ଼ାଁ,
ମୁଁ ପିଇ ଭଳୁଣି ବଳପଡ଼ା ଘାଟେ
ଫିଟାରେ ନାଆ"
ଦୁଇ ହାତ ଯୋଡ଼ି ନାଉରୀ ଜଣାଏ
କାତର ସ୍ୱର,
"ଧନମାନ ଆଜ ଖଟି ଖଟି ମୋର
ଛୁଟିଛି ବଳ ।
ସାହସ ଦେଉନି ଆଉ ଆଜ କାତ
ଧରିବା ପାଇଁ ।"
ଦାରୋଗା କହଇ "ଠକାଠକ ତୋର
ଚଳବ ନାହିଁ ।
ସରକାରୀ କାମ ବହୁତ ରହୁଛି
ମୋହର ପରେ,
ଜରୁରୀ ଯା ଅଛି ହୋଇ ପାରିବନି
ଆଜ ନ ଗଲେ ।"

ମଜ୍ଜନେ ନାଉଶ୍ରୀ ନାଆ ମେଲଦେଲ
ନଈର ଜଳେ,
ଜଣକ ପ୍ରସାଦୁ ନାଆରେ ଉଠିଲେ
ପଞ୍ଚାଶ ଦଳେ ।

ବାରୁଣୀ ପଟରେ ସହସା ଉଠିଲ
କଜଳ ମେଘ
ଖରତର ହୋଇ ପବନ ତହିଁକ
ଧଇଲ ବେଗ ।

ସଞ୍ଜ ତମସା ଆସିଯିବ ବୋଲି
ପ୍ରଭୂକୁ ଧାଇ
ହାତ ଗୁନ୍ଦିଲ ସେ ଚଞ୍ଚଳ ତୀର
ଧରିବା ପାଇଁ ।

ଏଣିକ ତେଣିକ କରି ପକାଇଲ
ବତାଓ ବାଆ
କୂଳ ଥିଲ ଆଉ ଅଳପ ମାତର
ବୁଡ଼ିଲ ନାଆ ।

କଏ ହତଭାଗା ତଳକୁ ବୁଡ଼ିଲ
ସଲିଳ ତଳେ
କଏ ଭାସିଗଲ ଖରତର ସେଇ
ପ୍ରବାହ ପରେ ।

ସୁଅରେ ବାହାରେ ସମସ୍ତ କର
ଶକତ ତାର
କଏ ପହଁରିଲା କାଟି କାଟି ସେଇ
ସ୍ରୋତର ଧାର ।

ଘର-ଭୂଇଁ-ଘାଟ୍ ଦେଖିପାରି ତାହା
ମଦନ ଜେନା
ନ ମାନିଲା ଭୟ ନଈର ବିପଦ
ନହଣ୍ଡ-ସେନା ।

ନଈର ସୁଅକୁ ଡେଇଁ ପଡ଼ି ବେଗେ
ପହଁରି ଗଲା,
ଜୀବନ ଝାସିଲେ ଜଗତେ ଜୀବନ
ମିଳଇ ପରା ।

ଡୁବୁ ଯାଉଥିଲା ଦାରୋଗା ସେଇ ଯେ
ଘୂର୍ଣ୍ଣି-ମଝିରେ
କଷ୍ଟେ ତାହାକୁ ଉଦ୍ଧାର କରି
ଆଣିଲା ତୀରେ ।

ଚେତା ଅଣାଇଲା ବହୁତ ଯତନେ
କରିଲା ସେବା,
ସେବା କିବା ତାକୁ ଜଗତେ ଜାଣେ ଯେ
ଜୀବନ ଦେବା ।

ଘରେ ନେଇ ଯାଇ   ପାନାହାର ଦେଇ
ଅତିଥି-ମୂରଖ
ଅତୁଳା ହରଷେ   ଯାମିନୀ ଯାପିଲା
ଉତୁଳା ବୁକେ ।

ଦେଖା ନଈ ଜଳେ   ରକ୍ତ ଶେଷ ସୂଜ
କନକ ଖେଳା
ଅରୁଣ ଆଲୋକ   ତାଳ ବନମଣି
ଉଦ୍ଭଟ ହେଲା ।

ଅତିଥି ସହସା   ପଡ଼ି ମଦନର
ଚରଣ ତଳେ,
ପ୍ରାଣର କାହାଣୀ   ଖୋଲି କହିଦେଲେ
ଆବେଗ ଭରେ ।

"ଅପରାଧୀ ମୁହିଁ,   ବଡ଼ ଅପରାଧୀ
ତୁମର ପାଶେ
ନିଜର ଦୋଷ ମୁଁ   ଜଣାଇ ପାରିବି
ଆଜି କି ଭାଷେ ?

କି କରିଥିଲି ମୁଁ   କି ଯେ କଲ ତୁମେ
ଦେଲ ଏ ପ୍ରାଣ
ମରବେ କପରି   ଭୁଲିଯିବି ମୁହିଁ
ଯେଉଁ ଏ ଦାନ ।

ତୁମର ଚରଣେ    ସମର୍ପି ଦେଇଅଛୁ
ହେବ କି ସେନା ?
ଚଳ ଉପରକୁ    ଅନାଇ ଖାଲି
ମଦନ ଜେନା ।

“ଚିହ୍ନି ପାରୁନ ?  ପାରୁନାହିଁ ?  ସାଧୁ
ଦାରୋଗା ମୁହିଁ,
ମନେ କର ସେଇ   ଜଳଧିର ବେଳା
ବାଲୁକା ଭୂଇଁ ।

ଦେଶ-ଆହ୍ୱାନେ ତୁମେ  ସେତେବେଳେ
ଦରଶପୁରେ
ଲୁଣ ମାରୁଥିଲ    ଲଦଗଛ ସେଇ
ସାଗର କୂଳେ ।

ପ୍ରଭୁ ସାଜ ମୁହିଁ    ବିଦେଶୀର ଦାସ
ନିଦେଶ ଦେଲି
ଆଖିର ନିମିଷେ    ଲାଠି ଚଳିବାକୁ
ହେଲିନି ଡେରି ।

ଲାଠିର ଆଘାତେ    ତୁମେ ପଡ଼ିଗଲ
ଭୂଇଁର ତଳେ
ଦୁଇ ବୁଟ ଜୋତା    କଷିଦେଲି ମୁହିଁ
ତା’ ଉପରେ ।

'ଜୟ ଗାନ୍ଧିଜୀ'    ଜୟ ଧ୍ୱନି ତୁମେ
ତୋଳିଲ ମୁଖେ
ପରଶ ତାହାର    ବାଜିଲା ନାହିଁ ତ
କାହାରି ବୁକେ ।
ମଣିଷ କପରି    ଜାନୁଆର ସାଜେ
କ୍ଷମତା ପାଇ
କିବା ସେ ଧରମ    କିବା ସେ କରମ
ବୁଝିଲ ନାହିଁ ।"

ସାଧୁ ଦାରୋଗାକୁ    ବୁକୁରେ ଜଡ଼ାଇ
ମଦନ କୁହେ
"ଅପରାଧ ସେ ତ    ଅପରାଧ ସେ ତ
ତୁମର ନୁହେଁ ।
ତୁମେ ତ ବିଦେଶୀ    ଶାସନର ଦାସ
ତୁମର ପ୍ରାଣ
କହିଲ କୁଆଡୁ    ବୁଝି ଥାଆନ୍ତା
ଦେଶର ମାନ ।
କ୍ଷମତାର ମୋହେ    କି କରେ ମଣିଷ
ଦେଖିଚ ଆଖି
ତୁମେ ସେତେବେଳେ    ଯାହାକଲ ତାହା
ତୁମର ଲାଖି ।

ଜୀବନ-ସାଧନା  ବରି ନେଇଛି ମୁଁ
ଦେଶର ପାଇଁ
ଯାହା କର ତୁମେ,  ତୁମେ ମୋ ଦେଶର
ତୁମେ ମୋ ଭାଇ ।"

ଦାରୋଗା କହିଲା, "ଯାଉଛି ଆଜ ମୁଁ
ଦେଶ-ଦ୍ରୋହୀ
ଭାଇକୁ ପାଇବ  ହେମ-ନିଗଡ଼ରୁ
ମୁକ୍ତ ହୋଇ ।"

---

# ରତ୍ନଲାଭ

"ଏ ମାସର ଫଳ କଅଣ ଠାକୁର
ଗଣନା କର ତ ଥରେ ।"

ବନ୍ଧୁ ସୁରେଶ ବୀର ହାମ୍ବୀର
ପଚାରିଲେ କୁତୂହଳେ ।

ବୃଦ୍ଧ ଜ୍ୟୋତିଷୀ ରେଖା ଲେଖା ଦେଇ
ବହୁତ ସମୟ ନେଇ

ହାସ୍ୟ-ଧଉଳ ଓଷ୍ଠେ ଭାଷିଲେ,
"ଫଳ ବାହାରିଲା ଏଇ,

ପାଠ କହୁଅଛି ସବୁ ମଙ୍ଗଳ
ରତନ ଲାଭର ଯୋଗ

ବହୁ ରତନ ଏ ଦେଶ ପଥେ ଯିବ
ଏ ମାସ ନୋହୁଣୁ ଭୋଗ ।"

ସଚିବରେ ଋର୍ବିଁ        ଶୁଣାଇଲେ ରାଜା,
“କହ କି ଖବରୁଛ ଏବେ,
ସୁନାର ସୁଯୋଗ        ଛାଡ଼ିବାର ନୁହେ
ଶୁଭ ଡାକୁଅଛି ଯେବେ ।

ସେନାବଳ ଦେଇ        ଜଣେ ଜଣେ ବଡ଼
କର୍ମକର୍ତ୍ତାର ଜିମା
ଏ ମାସକ ପାଇଁ        ଅତି ସାବଧାନେ
ଜଗାଅ ଦେଶର ସୀମା ।

ଯେତେକେଳେ ଯିବ  ଯେ ଯାନ ବାହାନ
ଯେଉଁ ପଥେ ଯେଉଁ ଆଶେ,
ଅଟକ କରାଇ        ଏଇ କଟକକୁ
ଅଣାଅ ମୋହର ପାଶେ ।”

“ଆଦେଶକୁ ତବ        ପ୍ରସ୍ତୁତ ଅଛୁ”
ମନ୍ତ୍ରୀ-ବଚନ ଶୁଣି
ନୃପତି ଉଠିଲେ        ମରମ ଭିତରେ
ରତନ-ସପନ ଗୁଣି ।

କେତେଦିନ ପରେ        ସୈନିକ ଏକ
ଜଣାଇଲା ନୃପ ପାଶେ
“ବୃନ୍ଦାବନରୁ ଏ ଯାନ        ଆସୁଥିଲା
ଗଉଡ଼ ଦେଶର ଆଶେ ।

ବଡ଼ ଦମ୍ଭରେ          ଶକଟପତି ଏ
ସମ୍ମୁରେ ହୋଇଛି ଉଭା
ରାଜ-ଦରଶନ-ଲୁବ୍ଧ          ମାନେ ନାହିଁ
ଉଦ୍ଧତ ଏଇ ଯୁବା ।"

"କେ ତୁମେ ଯୁବକ ?" ପୃଚ୍ଛିଲେ ରାଜା
ଦର୍ପିତ ଅଭିମାନେ,
କିବା ସମ୍ପଦ          ନେଇଅଛ ତୁମେ
ତୁମ ଏ ଶକଟ ଯାନେ ?"

"ରତନ ବଣିକ          କରଇ ମୁଁ ରାଜା
ଶ୍ରୀନିବାସ ମୋର ନାମ,
ଶକଟ ଭରି ମୁଁ          ପଣ୍ୟ ନେଉଛି
କେବଳ ରତନ ଦାମ ।"

ଆଶୁ ଆଦେଶରେ          ଖୋଲି ହେଲା ସହୁଁ
ଶକଟର ଘଟାଟୋପ
ହରଷ ପାଇବା ଦୂରେ          ଥାଉ ତେଣେ
ନୃପତି ଲଭିଲେ କୋପ ।

ଯାହା ସେ ଦେଖିଲେ          ରତନ ନୁହଇ
ଅଥବା ନୁହଇ ମୋତି,
ଅତି ଯତନରେ          ବୋଝାଇ ହୋଇଛି
କାଷ୍ଠ ବହୁତ ପୋଥି ।

"ମୋହର ସାଥିରେ ପରିହାସ ତବ ?"
ନୃପତି ଭାଷିଲେ ରାଗେ,
ରାଜବେଶ କିବା ଜାଣି ନାହିଁ ତୁମେ
ଜାଣିବ ତା ଏଇଲାଗେ ।"

"ପରିହାସ କେବେ ନୁହଇ ହେ ରାଜା
ସତ୍ୟ ଏ ମୋର ବାଣୀ,
ରାଜ ଅଭିମାନେ ରାଜମଦେ ତୁମେ
କିଛି ପାରୁନାହିଁ ଜାଣି ।

ଏଇ ପୋଥି ପାଇଁ ଏ ଶକଟେ ମୋର
ପୂରିଛି ରତନ ଦାମ
ରତନର ମୂଲ ନ ନେଇ ଲୋକରେ
ରତନ କରେ ମୁଁ ଦାନ ।"

"ଦଣ୍ଡକୁ ତବ ଶଙ୍କା ନାହିଁ କି
କର କେତେ ବାତୁଳତା,
ରତନ ବଣିକ ବୋଲି ଶୁଣାଉଛ
ବଡ଼ ଅଦ୍ଭୁତ କଥା ।

ରାଶି ରାଶି ହୋଇ ନଅରେ ମୋହର
ରହିଛି ବହୁତ ପୋଥି
ଅଚିରେ ଦେଖାଅ ତୁମରି ପୋଥିରେ
ଅଛି କି ରତନ ମୋତି ?"

ସନ୍ନ୍ୟାସୀ ଯୁବା   ମାଗିଲେ, "ହେ ରଜା
ଦଶଗୋଟି ଦିନ ଦିଅ,
ରତନ ତୁମକୁ   ଦେଖାଇ ପାରିବ
ଜଗତର ଲୋଭନୀୟ ।"

"ଦଶଦିନ କିମ୍ବା   ଏକ ମାସ ନିଅ
ନିଅ ତେବେ ଏକମାସ"
ସୁଯୋଗ ବିଚାରି   ଶ୍ରୀନିବାସ ପୁଣି
ଜଣାଇଲେ ଅଭିଳାଷ,

"ପ୍ରଭାତେ ହେଉ ବା   ସନ୍ଧ୍ୟାରେ ହେଉ
ନିରୋଳା ଏକଇ ପୁରେ
ଗୋଟିଏ ଘଟିକା   ଆଲୋଚନା ମୁହିଁ
ବାଞ୍ଛୁଅଛି ତବ ତୁଲେ ।"

"ତୁମ ଏ କଥାରେ   ସମ୍ମତି ଦେଲି
ହେଉ ତୁମ ଅଭିଳାଷ,
ମାତ୍ର ରତନ   ନ ଦେଖାଅ ଯଦି
କରିବ କାରାର ଗ୍ରାସ ।"

ଶ୍ରୀନିବାସ ନିତି   ଆପଣାର ପୋଥି
ପଢ଼ିଲେ ନୃପତି ଆଗେ
ବୈଷ୍ଣବ ପ୍ରେମ   ଧର୍ମର କଥା
ବୁଝାଇଲେ ପ୍ରେମରାଗେ ।

ଚଳ ଚଂଚଳ ସମୟର ସ୍ରୋତେ
ନ ଯାଉଣୁ ଏକମାସ
ନରେଶ କହିଲେ ଏତେଦିନେ ଆଜ
ପୂର୍ଣ୍ଣ ମୋ ଅଭିଳାଷ ।

ଦେଖାଇନ ଖାଲି "ସନ୍ନ୍ୟାସୀ ତୁମେ,
ଦେଇଚ ରତନ ମାଳା
ପରାଜିତ ମୂର୍ଦ୍ଧ ଆପେ ବହୁଅଛି
ତୁମ ଧର୍ମର ଜୟ ।"

---

# ସୈନିକ ନାରୀ

ଦିଲ୍ଲୀ ନିବାସି, ମୁକ୍ତି-ସମରେ
ଜଲ୍‌ଦି ବାହାର ପଡ଼ ।
ସବୁଜ-ବସନା ସୈନିକ ନାରୀ
ଡାକଇ ଥରକୁ ଥର ।
"ଇଂରେଜ ଜାତି ଦେଉଅଛି ନିତି
ଲାଞ୍ଛନା ଅପମାନ
କି ସପନ ଆଜ ଦେଖୁଅଛ ତୁମେ
ହିନ୍ଦୁ ମୁସଲମାନ ?
ଦେଶର ସିପାହି ମାତି ଉଠିଲେଣି
ମାତୃଭୂମିର ଲାଗି
ଧମନୀରେ ଜାଳି ରକ୍ତର ନିଆଁ
ଉଠରେ ଉଠରେ ଜାଗି ।

ଜଲ୍‌ଦି ବାହାର ପଡ଼,
ତନ୍ଦ୍ରା-ଜଡ଼ ଏ ମାଟି ପରେ ଆଜ
ଜଗାଅ ଜୀବନ ଝଡ଼ ।"

ନାଗ୍ପର ସେ ଡାକ ମନ୍ତ୍ର-ନାଦରେ
ଭେଟଣଲ୍ ବହୁତ କାନେ
ଦଳ ଦଳ ହୋଇ ବାହାରି ପଡ଼ିଲେ
ମୁକ୍ତିର ଅଭିଯାନେ ।

ଦିଲ୍ଲୀ ସହରେ ଯିଏ ଯେଉଁଠାରେ
ଭେଟିଲେ ସାହେବ ଗୋରା ।
ଅନାଉ ଅନାଉ ଶେଷ କରିଦେଲେ
ମୃତ୍ୟୁ ଦୁଆର ଖୋଲା ।

ଜନ୍ମଭୂଇଁର ଡାକ ଦେଇ ଦେଇ
ବନ୍ଧୁକ ଗୁଳି ମାରି
ମୃତ୍ୟୁ ପଥକୁ କେତେ ଇଂରେଜ
ପଠାଇଲା ବୀରନାରୀ ।

ଚକିତ ଚମକେ ଇଂରେଜ ସେନା
ହୋଇ ଖର ଆଗୁଆନ
ଗୋଲା ବନ୍ଧୁକେ ମାଇଲେ ବହୁତ
ହିନ୍ଦୁ ମୁସଲମାନ ।

ସ୍ତୁହାଁରେ ଦିଲ୍ଲୀ ପଥେ,
ଆହତ ହୋଇ ସେ ସୈନିକ ନାରୀ
ପଡ଼ିଲା ଅରାତି-ହାତେ ।

କରୁଣାର ଭାବ ଦେଖାଇ କହଇ
ଇଂରେଜ ସେନାପତି
"ନାରୀ ହୋଇ ତୁମେ ଜୀବନେ ତୁମର
ବରିଅଛ ଏ କି ଗତି ?

ବନ୍ଦୀ ତୁମକୁ ମୁକ୍ତି ଦେଉଛି
ଯାଅ ଚାଲିଯାଅ ତୁମେ
ଆଉ କେବେ ପୁଣି ଜୀବନର ପଥେ
ନ ଆସିବ ରଣଭୂମେ ।"

ଦୃପ୍ତମନା ସୈନିକ ନାରୀ
ଢାଳଇ ଅନଳ ବାଣୀ,
"ନାରୀ ଜୀବନର ଗୌରବ ମୁଁ ତ
ଭଲରୂପେ ଅଛି ଜାଣି ।

ଫେରିଯିବି କାହିଁ ବିଫଳ କରି ମୋ
ମୁକ୍ତିର ଅଭିଯାନ ?
ଦେଶର ସକାଶେ ହସି ହସି ମୁହିଁ
କରିବି ଜୀବନ ଦାନ !"

"ମୁକ୍ତି କାହାକୁ ଦେଉଅଛ ତୁମେ
ସହଜ ନାରୀ ଏ ନୁହେଁ,"
ଅପର ସେନାନୀ କହଇ, "ଏହାକୁ
ରଖ ନେଇ କାରା-ଗୃହେ ।

ମୁକ୍ତି ଏହାକୁ ଦେବ ଯଦି ତୁମେ
କାହାରେ ଯାଇ ଏ ନାରୀ
ପ୍ରଚାର କରିବ "ନିଜ ଶକତିରେ
ଆସିଅଛି ମୁହିଁ ଚାଲି ।"
ମୂର୍ଖ ଜନତା ନ ବୁଝି ନ ସୁଝି
ଶୁଣିବେ ଏହାର କଥା,
ମଣିବେ ଏହାକୁ ଫ୍ରାନ୍ସ ଦେଶର
ଜୋନ ଡି ଆର୍କ ଯଥା ।

କହେରେ ଏ ନାରୀ ମାନ ବଢ଼ାଇଣ
ଦିଲ୍ଲୀର ତୃଣ ଧାରେ
ଦିଲ୍ଲୀ ସହରେ ନ ରଖ ଯାଉ ଏ
ଆମ୍ଭଙ୍କ କାରାଗାରେ ।"

ଆମ୍ଭଙ୍କର ସେ କାରା-ତମସାରେ
ବନ୍ଦୀ ହୋଇଲା ବାଳା
କି ହେଲା ତାହାର ଜୀବନର ଗତି
ଜାଣିଥିବ ସେଇ କାରା ।
ସୁନାର ମୁକ୍ତି ସପନ ତାହାର
କେଉଁପରି ହେଲା ଶେଷ,
ଇତିହାସ ଆଜ ଜାଣି ନ ପାରିଲା
ଗୁପ୍ତ ସେ ସନ୍ଦେଶ !

ଶୁଣରେ ଶୁଣରେ ଆଜି
ଦିଲ୍ଲୀ ପଥରେ ନିଶୀଥରେ ତାର
ଘୋଡ଼ା-ଟାପୁ ଉଠେ ବାଜି ।
ମୂର୍ଚ୍ଛିତ ସେଇ ଅଗ୍ନିର ଡାକ
ଶୁଭଇ ଥରକୁ ଥର
"ଦିଲ୍ଲୀ ନିବାସି, ମୁକ୍ତି-ସମରେ
ଜଲ୍‌ଦି ବାହାର ପଡ଼ ।"

———

# ଟିପ୍ପଣୀ

## ବୃଷି ଖୁଣ୍ଟିଆ

ଆମ ଦେଶରେ ଗୋଟିଏ ପ୍ରବାଦ ଅଛି—

"ନଈରେ ବାଲିଆ ଚଢ଼ୁଥିଲ
କଜଳ ସିନ୍ଦୂର ନାଆ ଲୋ ରାଣ୍ଡି
ପୁଣି ବୃଷିଆ ଲେଉଟିଲା ।"

ଏଇ "ବୃଷିଆ" ମୋର "ବୃଷିଖୁଣ୍ଟିଆ" । ତାଙ୍କର ପ୍ରକୃତ ନାମ ଚନ୍ଦନ ହଜୁରି । ଚନ୍ଦନ ହଜୁରି ଓଡ଼ିଶାର କେଡ଼େ ବଡ଼ ଗୌରବ ତାହା ଆଜି ଅବଧାରଣାର ଅତୀତ । ମୋର ଏଇ କବିତାର ଉପାଦାନ ବିଶେଷ ଭାବରେ ମୁଁ ସଂଗ୍ରହ କରିଚି, 'ନବଭାରତ'ର ସ୍ୱାଧୀନ ଭାରତ ସଂଖ୍ୟାରେ ପ୍ରକାଶିତ ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଚନ୍ଦନ ହଜୁରି' ଆଲୋଚନାରୁ ଓ ବ୍ୟକ୍ତିଗତ ଭାବରେ ପୁରୀର ଶ୍ରୀ ସଦାଶିବ ରଥ ଶର୍ମାଙ୍କ ଠାରୁ । ସେ ମଧ୍ୟ ବୃଷି ଖୁଣ୍ଟିଆଙ୍କ ଜୀବନ-ଚରିତ ପ୍ରକାଶ କରିଚନ୍ତି 'ଝଙ୍କାର' ପତ୍ରିକାର କେତୋଟି ସଂଖ୍ୟାରେ । ଝାନ୍ସିର ଲକ୍ଷ୍ମୀବାଈ ବୃଷିଖୁଣ୍ଟିଆଙ୍କ ପାଖକୁ ଯେଉଁ ଚିଠି ଲେଖିଥିଲେ ତାହା ଶ୍ରୀ ଶଦାଶିବ ରଥ ଶର୍ମା ହଜୁରି ପରିବାରରୁ

ସଂଗ୍ରହ କରିଛନ୍ତି । ତାହା ଆଜି ଚନ୍ଦନ ହଜୁରୀଙ୍କ ଜୀବନ ଚରିତର ଏକ ବଳିଷ୍ଠ ଉପାଦାନ । କୃଷି ଖୁଣ୍ଟିଆ ମଧ୍ୟ ଥିଲେ ଜଣେ କବି । ତାଙ୍କର ଖଣ୍ଡିଏ ପାଣ୍ଡୁଲିପି ମିଳିଛି— ଛନ୍ଦ ବନ୍ଧରେ ଲିଖିତ 'ଲକ୍ଷ୍ମୀ ବାଣ' ।

## ୟାରବାଡ଼ା-କାରାବାସେ

କବିତାର କଥାବସ୍ତୁ 'ନବଭାରତ'ର ମହାତ୍ମାଜୀ ସଂଖ୍ୟାରେ ପ୍ରକାଶିତ ପଣ୍ଡିତ ନୀଳକଣ୍ଠଙ୍କ "ଗାନ୍ଧୀଜୀ ମରିନାହାନ୍ତି" ପ୍ରବନ୍ଧରୁ ମୁଁ ଗ୍ରହଣ କରିଅଛି ।

## କୋଟନିସ୍ ଆଉ ଫେରିନାହିଁ

ପଣ୍ଡିତ ଜବାହରଲାଲ ୧୯୩୭ ରେ ଥିଲେ ଭାରତର ରାଷ୍ଟ୍ରପତି । ସେତେବେଳକୁ ଚୀନା ଉପରେ ଜାପାନର ଭୟାନକ ରଣତାଣ୍ଡବ । ପଣ୍ଡିତଜୀ ଡାକ୍ତର ଅଟଲଙ୍କ ନେତୃତ୍ୱରେ ଗୋଟିଏ ସେବା-ସୈନିକ ଦଳ ଚୀନାକୁ ପଠାଇଥିଲେ । ଡାକ୍ତର ଦ୍ୱାରକାନାଥ କୋଟନିସ୍ ଥିଲେ ସେଇ ଦଳର । ସେ ଆଉ ଭାରତକୁ ଫେରି ନ ଥିଲେ । ସେଇଠି ବିବାହ କରିଥିଲେ । ଚୀନାର ରଣକ୍ଷେତ୍ରରେ ଆହତ ସୈନ୍ୟଙ୍କର ସେବା କରୁ କରୁ ତାଙ୍କର ସ୍ୱାସ୍ଥ୍ୟ-

ଭଙ୍ଗ ହେଲ । ସେଇଠି ସେ ପ୍ରାଣ ହରାଇଲେ । ସ୍ୱଇନାକୁ ଚରଣନ ପାଇଁ ନିଜର କରି ନେଲେ । ମୋର କଥା ଆବାପଙ୍କ ଲେଖା And he did not come back ରୁ ଗୃହୀତ । "ଡକ୍ଟର କୋଟନିସ୍" ସିନେମା ଜଗତରେ ବଡ଼ ଜନପ୍ରିୟ ଚିତ୍ର ।

## କୌମୁଦୀର ଅବଦାନ

ଗାନ୍ଧିଜୀଙ୍କର ନାରୀ ସମ୍ପର୍କୀୟ ଲେଖାର ଚୟନ "To Women" ରେ କୌମୁଦୀଙ୍କର କଥା ଉଲ୍ଲେଖ ଅଛି ।

## ଗୁର୍ଖା ସିପାହୀ

ବସ୍ତୁବସ୍ତୁଟି ଗୋଟିଏ ସତ୍ୟ ଘଟଣାରୁ ନିଆ ଯାଇଛି । ଦୟାନନ୍ଦ ବୈଦିକ କଲେଜର ସଂସ୍କୃତ ଅଧ୍ୟାପକ ଶ୍ରୀ ଲକ୍ଷ୍ମୀ ନାରାୟଣ ଶାସ୍ତ୍ରୀଙ୍କ ନିକଟରୁ ମୁଁ ଘଟଣାଟି ଶୁଣିଥିଲି । ସେ ଜାଲିଆନୱାଲାବାଗରେ ଥିଲାବେଳେ ପ୍ରତ୍ୟକ୍ଷରେ ଦେଖି ଥିବାର ପ୍ରକାଶ କରିଥିଲେ । ତାହା ୧୯ କିମ୍ବା ୨୧ ଅଗଷ୍ଟ, ୧୯୪୭ ରେ ଘଟିଥିଲା ।

## ସ୍ମୃତିର ଫଳକ

କାଠଯୋଡ଼ୀ ନଦୀର ପଥର ବନ୍ଧ ଉପରେ ବୃକ୍ଷ ପାଖରେ ଖଣ୍ଡିଏ ସ୍ମୃତିଫଳକ ଲୋକ ଦୃଷ୍ଟିରେ ପଡ଼େ ।

ଚହ୍ନିରେ ଲେଖାଅଛି, ହେମନ୍ତ କୁମାରଙ୍କର ପୁଣ୍ୟ ପ୍ରୟାଣ । ୧୮୮୯ର ନଭେମ୍ବର ମାସ ୪ ରେ ହେମନ୍ତ କୁମାର ଜନ୍ମଲାଭ କରିଥିଲେ କଟକ ଜିଲ୍ଲାର ବଢ଼ଦା ଗ୍ରାମରେ । ଅନ୍ୟଙ୍କୁ ଉଦ୍ଧାର କରି ସେ ନିଜେ ବରଣ କରି ନେଲେ ସଲିଳ-ସମାଧି ୧୯୨୩ର ମାର୍ଚ୍ଚ ୧୮ ତାରିଖରେ । ତାଙ୍କ ପିତାଙ୍କ ନାମ ଶ୍ରୀ ହରିପ୍ରସାଦ ଗୁପ୍ତ ।

## ସତୀ

ହୁଗୁଳି ଜିଲ୍ଲାର ଶେଷ ସତୀଦାହର ଗୋଟିଏ ଚିତ୍ର । "Bengal under Leutenant Governors" Vol. II ରେ ଅଛି ବଙ୍ଗଳାର ଭୂତପୂର୍ବ ଲାଟ Lord Haliday ଙ୍କର ଗୋଟିଏ ବିବୃତି । ଲର୍ଡ୍ ହାଲିଡ଼େ ହୁଗୁଳି ଜିଲ୍ଲାର ମାଜିଷ୍ଟ୍ରେଟ ଥିଲାବେଳେ ସେହି ସତୀଦାହ ପରିଚାଳନା କରିଥିଲେ ।

## ନୃତ୍ୟୋତ୍ସବେ

କବି ମଧୁସୂଦନଙ୍କର ଜୀବନରେ ଏହା ଏକ ସ୍ମରଣୀୟ ଘଟଣା । ବାଲେଶ୍ୱରରେ ମୁଁ ତାହା ଶୁଣିଥିଲି । ମନେହୁଏ ତାହା କବିଙ୍କର "ପତିତା ରମଣୀ" ଚତୁର୍ଦ୍ଦଶ ପଦୀର ଭିତ୍ତି ଭୂମି ।

## ପ୍ରାଣର ପରଶ

ଘଟଣାଟି ସତ୍ୟ ଉପରେ ପ୍ରତିଷ୍ଠିତ । ମଦନ ଜେନା ଏରସମା ଥାନାର ବଳରାମପୁର ଗ୍ରାମର । ସେ ୧୯୩୦ ର ଲବଣ ସତ୍ୟାଗ୍ରହରେ କାରାବରଣ କରିଥିଲେ । ୧୯୩୨ ରେ ସେ କରୁଥିଲେ ସଙ୍ଗଠନ କାର୍ଯ୍ୟ । "ରାମ କୃଷ୍ଣ ମିସନ୍ ରିଲିଫ୍ ସୋସାଇଟି"ରେ ସେ କାର୍ଯ୍ୟ କରୁଥିଲେ । ରହୁଥିଲେ ବାଳିକୁଦାରେ । ସାଧୁ ଦାରୋଗା ମଦନ ଜେନା ଉପରେ ଲବଣ ସତ୍ୟାଗ୍ରହରେ ଅତ୍ୟାଚାର କରିଥିଲେ । କବିତାର ଘଟଣା ପରେ ସେ ଇସ୍ତଫା ଦେଇ ସରକାରୀ ଚାକିରିରୁ ବିଦାୟ ନେଇଥିବାର ଶୁଣାଯାଏ ।

## ରକ୍ତ ଲିଭ

କଲିକତା ୧୯୩୮ର ପୂଜା ସଂଖ୍ୟା Hindusthan Standardରେ ପ୍ରକାଶିତ "A forgotten Kingdom of Bengal—Bishnupur" ନାମକ ପ୍ରବନ୍ଧରୁ ଓ "ରେଲପଥେ ବାଂଲା" ରୁ ସଂଗୃହୀତ । ବଙ୍ଗଳାର ବିଷ୍ଣୁପୁର ରାଜ୍ୟରେ ୧୫୮୬ରେ ରାଜତ୍ୱ କରୁଥିଲେ ରାଜା ବୀର ହାମ୍ବୀର । ପ୍ରଥମେ ସେ ଥିଲେ ବଡ଼ ସଂଗ୍ରାମପ୍ରିୟ, ବୈଷ୍ଣବ ଧର୍ମ ଗ୍ରହଣ କରିବାରେ ତାଙ୍କ ଜୀବନରେ ଆସିଥିଲା ଘୋର ପରିବର୍ତ୍ତନ ।

# ସୈନିକ-ନାରୀ

ସୈନିକ-ନାରୀଙ୍କର ନାମ ଅଜ୍ଞାତ । ସେ ଜଣେ ମୁସଲମାନ ମହିଳା । ସିପାହି ବିଦ୍ରୋହ ସମୟରେ ଇଂରେଜମାନେ ଦିଲ୍ଲୀର କାଶ୍ମୀର ଗେଟ୍ ତରଫରୁ ଆକ୍ରମଣ କରିବାରୁ ଏ ବୀରାଙ୍ଗନା ଘୋଡ଼ାରେ ଚଢ଼ି ଦିଲ୍ଲୀବାସୀଙ୍କୁ ଅଦ୍ଭୁତ ଭାବରେ ଉଦ୍-ବୋଧନର ବାଣୀ ଶୁଣାଉଥିଲେ । ସେ ବନ୍ଧୁକ ଧରି, କେତେବେଳେ ଅଣି ଚାଳନ କରି ଇଂରେଜ ବିରୁଦ୍ଧରେ ଲଢ଼େଇ କରିଚନ୍ତି । ଶେଷରେ ଲଢ଼େଇ କରି ଜୀବନ ଶେଷ କରିଛନ୍ତି ଆମ୍ବାଲା ଜିଲ୍ଲାର କାରାଗୃହରେ । ୧୯୨୫ ଅଗଷ୍ଟ ସଂଖ୍ୟା "Mordern Review" ରେ ପ୍ରକାଶିତ Syed Ismail B. A. ଙ୍କ The green-cled Lady of the Mutiny (Translated from Khoja Hosen Nizami's Teardrops) ଲେଖା ମୋର ଅବଲମ୍ବନ ।

---

## କବିଙ୍କର ଅନ୍ୟାନ୍ୟ ଅବଦାନ

**କାଳିଦାସ**—କାବ୍ୟ-ନାଟିକା, ଏକଟଙ୍କା ଚାରିଅଣା ।

ଓଡ଼ିଆ ସାହିତ୍ୟରେ ସଂପୂର୍ଣ୍ଣ ଅଭିନବ । କବି କାଳି-
ଦାସଙ୍କର ଜୀବନ ଅବଲମ୍ବନରେ ଭାରତର ଯେ କୌଣସି
ସାହିତ୍ୟରେ ନାଟ୍ୟ ନୁହେଁ ।
ଉଚ୍ଚଭାବ, ଚମତ୍କାର ଶୈଳୀ

**କାବ୍ୟନାୟିକା**—କବିତା, ଦୁଇଟଙ୍କା

କବିଙ୍କ ଗୀତ-କବିତାର ଚମତ୍କାର ସମାବେଶ ।
ତହିଁରେ ପ୍ରବାହିତ ହେଉଛି ନୃତ୍ୟ-ଚପଳ ଛନ୍ଦ,
ଯାଦୁମୟୀ ଭାଷା ଓ ମନନାଙ୍କ ଭାବର ତ୍ରିବେଣୀ ।

**ଉତ୍କଳିକା**—କଥାକାବ୍ୟ, ବାରଅଣା ଛ ପାହି

ଉତ୍କଳର ଗୌରବ ଏଥିରେ ଅମରତା ଲାଭ କରିଅଛି ।
କବିତା ଗୁଡ଼ିକ ଐତିହାସିକ କଥା ଉପରେ ଲିଖିତ ।

**ବିପ୍ଳବୀ ରାଧାନାଥ**— କାବ୍ୟ-କବିତା, ପାଞ୍ଚଅଣା

ରାଧାନାଥଙ୍କୁ ବୁଝିବାରେ ଏହା ଏକ ଅଭିନବ ଦୃଷ୍ଟି-
କୋଣ । ସମୀକ୍ଷା ଉପରେ କବିତା କିପରି ସାଫଲ୍ୟ-
ମଣ୍ଡିତ ହୋଇଅଛି, ଏହା ତାହାର ନିଦର୍ଶନ ।

**ନବଜାତକ**—କବିତା, ଦଶଅଣା

କେତେକ କ୍ଷୁଦ୍ର କବିତାର ଚୟନିକା ।
ଭାଷା ଓ ଭାବ ମନୋରମ ।

## ପ୍ରକାଶ ଅପେକ୍ଷାରେ

**ମେଘଦୂତ**— ଅନୁବାଦରେ ମୌଳିକତାର ସ୍ପର୍ଶ ଓ
ଅଭିନବ ଶବ୍ଦ ସମ୍ଭାର ଯେଉଁ ଅମୃତ ପ୍ରକାଶ କରୁଛି ।

**ଯାଯାବର ଓ ଛାୟା**— ପ୍ରେମ-କବିତା

**ମୌସୁମୀ**— ବିପ୍ଳବ-କବିତା

—✱—